# କୁଷ୍ଠରୋଗ ସମ୍ପୂର୍ଣ୍ଣ ଭଲ ହୁଏ



ଡଃ ନିରଞ୍ଜନ ତ୍ରିପାଠୀ

Digitized by srujanika@gmail.com

# କୁଷ୍ଠ ରୋଗ ସଂପୂର୍ଣ୍ଣ ଭଲ ହୁଏ

ଡକ୍ଟର ନିରଞ୍ଜନ ତ୍ରିପାଠୀ ଏମ୍. ଡି.

ଏଫ୍. ଆଇ. ସି. ଏ. (ଆମେରିକା)

ଏଫ୍. ସି. ସି. ପି. (ଆମେରିକା)



Digitized by srujanika@gmail.com

# କୁଷ୍ଠ ରୋଗ ସଂପୂର୍ଣ୍ଣ ଭଲ ହୁଏ

**ଡକ୍ଟର ନିରଞ୍ଜନ ତ୍ରିପାଠୀ ଏମ୍. ଡି.**

ଜୀବନ ବିକାଶ

ନିମସାହି,

କଟକ-୭୫୩୦୦୧

ପ୍ରକାଶିକା :

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର,

କଟକ—୭୫୩୦୦୨

**ପ୍ରଥମ ସଂସ୍କରଣ—୧୯୮୮**

ମୁଦ୍ରଣ :

**କନକଦୁର୍ଗା ପ୍ରିଣ୍ଟର୍ସ**

ଝାଞ୍ଜିରୀମଙ୍ଗଳା ବଜାର

କଟକ—୨

ମୂଲ୍ୟ—**ପାଞ୍ଚଟଙ୍କା ମାତ୍ର**

Digitized by srujanika@gmail.com

# କୁଷ୍ଠରୋଗ ସଂପୂର୍ଣ୍ଣ ଭଲ ହୁଏ

ଡାକ୍ତର ପ୍ରତିଭା ଦେବୀ ରାଜ୍ୟର ପ୍ରତିଷ୍ଠିତ ସ୍ତ୍ରୀ ରୋଗ ବିଶେଷଜ୍ଞ । ତାଙ୍କର ସ୍ୱାମୀ ରାଜେନ୍ଦ୍ର ବାବୁ ଉଚ୍ଚ ସରକାରୀ ଇଂଜିନିଅର । ତାଙ୍କର ଗୋଟିଏ ପୁଅ ଆଉ ଗୋଟିଏ ଝିଅ । ଛୋଟ ପରିବାର ସୁଖୀ ପରିବାର । ପୁଅ କଣ୍ଣୋଡ଼ ପାଠପଢ଼ା ଶେଷ କରି ଏବେ ଜଣେ ବ୍ୟାଙ୍କ୍ ଅଫିସର ।

ବହୁ ଖୋଜା ଖୋଜି ପରେ ପ୍ରତିଭା ଦେବୀ, ରାଜେନ୍ଦ୍ର ବାବୁ ଘରକୁ ବୋହୂ କରି ଆଣିଲେ ସୁରଭିଙ୍କୁ । ଗୋଟିଏ ଗାଉଁଲରେ ଗଢ଼ା ସୁନ୍ଦରୀ । ଚମ୍ପା ଫୁଲିଆ ରଙ୍ଗ । ହସ ହସ ଚେହେରା । ସବୁ କାମକୁ ଆଗ । ଘର ଭିତରେ ସେ ସମସ୍ତଙ୍କର ମନ ନେଇ ସକାଳୁ ରାତି ଯାଏ କାମ କରୁଥାନ୍ତି ।

ବାହାଘରର ତିନିମାସ ଭିତରେ ବନ୍ଧୁବାନ୍ଧବ, ସାଇ-ପଡ଼ିଶା ସମସ୍ତଙ୍କ ମୁହଁରେ ସୁରଭିଙ୍କ ପ୍ରଶଂସା ପ୍ରତିଭା ଦେବୀ ମଧ୍ୟ ସମସ୍ତଙ୍କ ଆଗରେ ବୋହୂର ପ୍ରଶଂସା ନ କରି ଛାଡ଼ନ୍ତି ନାହିଁ । ବାଛି ବାଛି ପରୀଟିଏ ଆଣିଛନ୍ତି ବୋଲି ତାଙ୍କର ଗୁରି ଗର୍ବ । ନିଜର ପାରିଲା ପଣକୁ ବହୁତ ତାରିଫ୍ କରନ୍ତି ।

ଶ୍ୱଶୁରଙ୍କ ଅଫିସ ଯିବାକୁ ଥାଏ । ସୁରଭି ତରତରରେ ରୋଷାଇ ଘରକୁ ପଶିଲେ । ରାନ୍ଧିବାଟା ତାଙ୍କର ବଡ଼ ସଉକ । ଅଳ୍ପ ସମୟ ମଧ୍ୟରେ ସେ ଭାତ ତିଅଣ ନ ଭଜା କରିପାରନ୍ତି ।

Digitized by srujanika@gmail.com

କେତେଦିନ ସେବା କରୁ କରୁ ଗରମ ତେଲ ଫୁଟି ଆଙ୍ଗୁଳରେ ପଡ଼ି ଅଙ୍ଗୁଳିଗୁଡ଼ିକୁ ଫୋଟକା କରିଦେଲା । ସୁରଭି କିଛି ଜାଣି ପାରିଲେ ନାହିଁ । ଦୁଇ ତିନିଦିନ ପରେ ଘାଆଁଟା ଶୁଖିଲା ନାହିଁ । ସ୍ୱାମୀ କିଶୋର ଘା'ଟାକୁ ଦେଖିଲେ ଏବଂ ମା ପ୍ରତିଭା ଦେବୀଙ୍କୁ କହିଲେ ।

"ମା ହୁସିଆର ହୋଇ ସେବା କର ।" ଏହାକହି ଗୋଟିଏ ଘା ଶୁଖା ମଲମ ଲଗାଇବାକୁ ଦେଲେ । ସୁରଭିଙ୍କର ଘା ଯୋଗୁ କିଛି କଷ୍ଟ ହେଉ ନଥାଏ । ଏଣେ ଘା'ଟି ବି ଶୁଖୁ ନଥାଏ । ହାତ ଆଙ୍ଗୁଳି ବେଳେ ବେଳେ ଝିମି ଝିମି ହେଉଥାଏ । ଏ ପାଞ୍ଚ ଛଅ ଦିନରେ ଘା'ଟା ନ କମିଲାରୁ ସେ ଶାଶୁଙ୍କୁ ଦେଖାଇଲେ । ଶାଶୁ ପ୍ରତିଭାଦେବୀ ପରୀକ୍ଷା କରି ଦେଖିଲା ବେଳକୁ ଡାହାଣ ହାତ କହୁଣୀରେ ଗୋଟିଏ ଛଉ ତମ୍ବାଳିଆ ଦିଶୁଛି । ହାତର ଆଙ୍ଗୁଳରେ ସ୍ପର୍ଶ ଶକ୍ତି ନାହିଁ । ଛଉରେ ବି ସ୍ପର୍ଶ ଶକ୍ତି ନାହିଁ । ସେ ବ୍ୟସ୍ତ ହୋଇ ପଡ଼ିଲେ । ତାଙ୍କ ପାଟିରୁ ଅଜାଣତରେ ବାହାରି ପଡ଼ିଲା ଏତ କୁଷ୍ଠରୋଗ !

ସୁରଭି ଚମକି ପଡ଼ିଲେ । କାନ୍ଦି ପକାଇଲେ । ସ୍ୱାମୀ କିଶୋର ବାବୁ, ଶଶୁର ରାଜେନ୍ଦ୍ର ବାବୁ ବିବ୍ରତ ହୋଇ ପଡ଼ିଲେ । କିଶୋର ବାପାଙ୍କୁ ଆରଘରକୁ ଡାକି ନେଇ ସୁରଭିଙ୍କ ଶୁଣିଲାଭଳି କହିଲେ, "ସୁରଭିର କୁଷ୍ଠ ରୋଗ ହୋଇଗଲା । ମୁଁ ତା ସଙ୍ଗେ ଏକାଠି ଚଳିବି କେମିତି ? ମୋତେ ଅଲଗା ରହିବାକୁ ପଡ଼ିବ । ସୁରଭି

Digitized by srujanika@gmail.com

ବାପ ଘରକୁ ଚାଲିଯାଉ । ପରେ ବିବାହ ବିଚ୍ଛେଦଟା କରାଇ ନେବା ।"

ଡାକ୍ତର ପ୍ରତିଭାଦେବୀ ଶାନ୍ତ ସ୍ୱରରେ କିଶୋରକୁ ପାଖକୁ ଡାକି ତା ମୁଣ୍ଡ ଅଉଁସିଦେଲେ । ସ୍ଥିର ଭାବରେ ପୁଅ ଆଖିକୁ ଚାହିଁ କହିଲେ, "ମୁଁ ତୋର ମାଆ । ତୋର କେବେ ଅମଙ୍ଗଳ ଚାହିଁବି ନାହିଁ । ତୁ ମୋର ଏକମାତ୍ର ପୁଅ । ଆଜିକାଲି କୁଷ୍ଠରୋଗ ଚିକିତ୍ସାରେ ପୂରା ଭଲ ହୋଇ ଯାଉଛି । ସୁରଭିର ଏ ରୋଗର ପ୍ରଥମ ଅବସ୍ଥା । ଏହା ସଂପୂର୍ଣ୍ଣ ଭଲହେବ ।"

ଆନନ୍ଦରେ କିଶୋର ଆଉ ସୁରଭିଙ୍କ ଆଖିରୁ ଲୁହ ବହୁଥିଲା । କୁଷ୍ଠରୋଗ ସମ୍ବନ୍ଧରେ କେତେକ ଜାଣିବା କଥା କହୁଥିଲେ ପ୍ରତିଭାଦେବୀ ।

## କୁଷ୍ଠ ରୋଗ କଣ ?

କୁଷ୍ଠ ରୋଗ ଗୋଟିଏ ସଂକ୍ରାମକ ରୋଗ । ଯକ୍ଷ୍ମା, ହଇଜା, ଟାଇଫଏଡ୍ ପରି ଏ ରୋଗ ଗୋଟିଏ ଜୀବାଣୁ ଦ୍ୱାରା ହୁଏ । ଏ ଜୀବାଣୁର ନାମ "ମାଇକୋବ୍ୟାକ୍ଟେରିଅମ୍ ଲେପ୍ରି ।" ଏହି ଜୀବାଣୁ ମୁଖ୍ୟତଃ ଚର୍ମ ଓ ହାତ ଗୋଡ଼ର ସ୍ନାୟୁକୁ ଆକ୍ରମଣ କରେ । ମସ୍ତିଷ୍କ ଓ ସୁଷୁମ୍ନା କାଣ୍ଡକୁ ଏହା ଆକ୍ରାନ୍ତ କରେ ନାହିଁ । ରୋଗ ହେଲା ପରେ ଏହା ଦୁଇ ପ୍ରକାର ରୂପ ନିଏ । ପ୍ରଥମଟି ରୋଗୀ ସହିତ ମିଳାମିଶା କଲେ ରୋଗ ହୁଏନାହିଁ, ଅନ୍ୟଟି ରୋଗୀଠାରୁ ସୁସ୍ଥ ଲୋକଙ୍କୁ ହୁଏ।

Digitized by srujanika@gmail.com

ନାହିଁ । ଏହି ଦ୍ୱିତୀୟ ପ୍ରକାର ରୋଗଟି ଗୁରୁତ୍ୱପୂର୍ଣ୍ଣ । ଏଭଳି ରୋଗୀଙ୍କ ସଂଖ୍ୟା ବେଶୀ । ଅନ୍ଧବିଶ୍ୱାସ ଓ କୁଶିକ୍ଷା ଯୋଗୁ ଜଣା ପଡ଼ିଲେ ଦ୍ୱିତୀୟ ଶ୍ରେଣୀ ରୋଗୀମାନେ ମଧ୍ୟ ସାମାଜିକ ବାସନ୍ଦ ଓ ଦୁଃଖଭୋଗ କରନ୍ତି ।

## ଦେଶର କୁଷ୍ଠ ରୋଗ ସମସ୍ୟା—

ଭାରତରେ କୁଷ୍ଠରୋଗ ଗୋଟିଏ ବଡ ସ୍ୱାସ୍ଥ୍ୟ ସଙ୍କଟ ; ୧୯୮୫ ଗଣନା ଅନୁସାରେ ଏ ଦେଶରେ ଚାଳିଶ ଲକ୍ଷ କୁଷ୍ଠ ରୋଗୀ ଅଛନ୍ତି । ଏ ସଂଖ୍ୟା ଅଧିକ ହେବାର ସମ୍ଭାବନା ବହୁତ ବେଶୀ । ସାମାଜିକ ବାସନ୍ଦ, ଅନ୍ଧବିଶ୍ୱାସ ଯୋଗୁ ସବୁ ରୋଗୀ ପ୍ରକାଶ୍ୟରେ ଔଷଧ ଖାଇବାକୁ ଏବଂ ନାମ ଲେଖାଇବାକୁ ଡରୁଛନ୍ତି ।

ସମାଜରେ ବହୁ ଲୋକଙ୍କର (ତଥାକଥିତ ଶିକ୍ଷିତ ଲୋକ ମଧ୍ୟ) ଏ ରୋଗ ସମ୍ବନ୍ଧରେ ଭ୍ରାନ୍ତଧାରଣା ଅଛି । କୁଷ୍ଠ ରୋଗ କଣ ? କାହାଁକି ହୁଏ ? ରୋଗ ହେଲା ବୋଲି କିପରି ସନ୍ଦେହ କରିବ ? କିଭଳି ଏହା ଭଲ ହେବ ? ବହୁତ କମ୍ ଲୋକ ଏ ସମ୍ବନ୍ଧରେ ଜାଣନ୍ତି । ବରଂ ବହୁ ଭୁଲ ତଥ୍ୟ ସେମାନେ ଜାଣନ୍ତି । ଏ ରୋଗ 'ପାପର ଫଳ' ପୂର୍ବ ଜନ୍ମର ଦୁଷ୍କୃତ ଅଭିଶାପ, ବଂଶର ଦୋଷ ବୋଲି ଅକାରଣରେ ଅଯଥାରେ ଦେହ ମନ ଉଭୟରେ ଯନ୍ତ୍ରଣା ପାଆନ୍ତି । ତେଣୁ ବର୍ତ୍ତମାନ ପରିସ୍ଥିତିରେ ଲୋକଙ୍କର କୁଷ୍ଠ ରୋଗ ପ୍ରତି ଭ୍ରାନ୍ତ ଧାରଣା ବଦଳାଇବା ସର୍ବାଦୌ କର୍ତ୍ତବ୍ୟ ଏବଂ ଏ ରୋଗ ଚିକିତ୍ସା ସମ୍ବନ୍ଧରେ ସମ୍ୟକ ଧାରଣା ହେବା ନିତାନ୍ତ ଆବଶ୍ୟକ ।

Digitized by srujanika@gmail.com

## ଭ୍ରାନ୍ତ ଧାରଣା ଓ ତାର ପ୍ରତିକାର—

୧) ବହୁ ଲୋକ କୁଷ୍ଠରୋଗ ବଂଶଗତ, ପାପର ଫଳ, ଯୌନ ବ୍ୟଭିଚାର, ପଚା ମାଛ ମାଂସ ଖାଇଲେ କିମ୍ବା ରକ୍ତ ଅପରିଷ୍କାର ହେଲେ ହୁଏ ବୋଲି ଭାବନ୍ତି । ଏହା ଭୁଲ ।

କୁଷ୍ଠ ରୋଗ ପ୍ରକୃତରେ ଯକ୍ଷ୍ମା, ପୋଲିଓ, ଡ଼ିପ୍‌ଥେରିଆ ଭଳି ଏକ ସଂକ୍ରାମକ ରୋଗ । ଜୀବାଣୁ ଦ୍ୱାରା ହୁଏ । କିନ୍ତୁ ଅନ୍ୟ ସଂକ୍ରାମକ ରୋଗ ଭଳି ଶୀଘ୍ର ଡିଏଁ ନାହିଁ । ବହୁ ପଛରେ ଡେଇଁ ଥାଏ । ପୂର୍ବ ବର୍ଣ୍ଣିତ କାରଣ ସହିତ ଏହାର ସମ୍ବନ୍ଧ ନାହିଁ ।

୨) କେତେକ ଲୋକ ମନେକରନ୍ତି କୁଷ୍ଠ ରୋଗ ପରିବାରରେ ଜଣକୁ ହେଲେ, ସାରା ପରିବାରକୁ ହେବାର ସମ୍ଭାବନା ଅଛି । ଖାଲି ଛୁଇଁଦେଲେ ଏ ରୋଗ ଡେଇଁ ଯିବ । ଆଉ କେତେକଙ୍କ ମତ ନିର୍ଦ୍ଦିଷ୍ଟ ପରିବାର ଗୁଡ଼ିକରେ କେବଳ କୁଷ୍ଠରୋଗ ହୁଏ, ସବୁ ପରିବାରରେ ହୁଏ ନାହିଁ ।

ଗବେଷଣାରୁ ଜଣାପଡ଼ିଛି ମାତ୍ର ଶତକରେ କୋଡ଼ିଏ ଭାଗ କୁଷ୍ଠରୋଗ ଡିଆ ରୋଗ । ସେହି ଶ୍ରେଣୀର ରୋଗୀ କୁଷ୍ଠରୋଗ ଡେଇଁବାରେ ସାହାଯ୍ୟ କରନ୍ତି । ଖାଲି ଛୁଇଁ-ଦେଲେ ରୋଗ ଡେଇଁ ଯାଏ ନାହିଁ ।

ଚିକିତ୍ସା ହେଉନଥିବା ଡିଆଁ କୁଷ୍ଠରୋଗୀ ସାଙ୍ଗରେ ବହୁକାଳ ମିଳାମିଶା କଲେ ଶତକରେ ଦୁଇଜଣ ସୁସ୍ଥ-ଲୋକଙ୍କୁ କୁଷ୍ଠରୋଗ ହୋଇପାରେ ।

Digitized by srujanika@gmail.com

୩) ଭ୍ରାନ୍ତ ଧାରଣାରେ ଅନେକ ଭାବନ୍ତି ହାତ ଗୋଡ଼ ଛୋଟ ହୋଇଗଲେ କିମ୍ବା କେଙ୍ଖା ହୋଇଗଲେ କୁଷ୍ଠରୋଗ ଚିହ୍ନାପଡ଼େ ।

କିନ୍ତୁ ପ୍ରକୃତରେ ଛଉରୁ ହିଁ ପ୍ରଥମ ଅବସ୍ଥାରେ କୁଷ୍ଠ ରୋଗ ଚିହ୍ନା ପଡ଼ିଥାଏ । ବହୁ ସମୟରେ ଏହି ଛଉଗୁଡ଼ିକରେ ସ୍ପର୍ଶ ଶକ୍ତି ନଥାଏ । ସ୍ପର୍ଶଶକ୍ତି ଥାଇ ଛଉଥିଲେ ମଧ୍ୟ କୁଷ୍ଠ ରୋଗ ହୋଇପାରେ ।

ହାତଗୋଡ଼ କେଙ୍ଖା ହୋଇଗଲେ ମଧ୍ୟ ତାହା ସଂକ୍ରାମକ କୁଷ୍ଠରୋଗ ନ ହୋଇପାରେ । ସ୍ନାୟୁ ଆକ୍ରମଣ କରି ଏହା ହାତ ଗୋଡ଼ କେଙ୍ଖା କରିଦିଏ । ତାହା ସହିତ ଡେଇ ବାର ସମ୍ବନ୍ଧ ନାହିଁ ।

୪) ସମାଜରେ କୁଷ୍ଠରୋଗୀଙ୍କ ପ୍ରତି ଅନୁକୂଳ ବାତାବରଣ ନାହିଁ । ରୋଗୀ ପ୍ରତି ଘୃଣା ଓ ହେୟ ଭାବ ରୋଗ ଲୁଚାଇବାରେ ସାହାଯ୍ୟ କରୁଛି । ବହୁ ସୁସ୍ଥ ଲୋକ ଏ ରୋଗ ସମ୍ବନ୍ଧରେ ଜାଣିବାକୁ ଭୟ କରୁଛନ୍ତି । କୁଷ୍ଠରୋଗୀ ଭଲ ହେବା ପରେ ମଧ୍ୟ ତାକୁ ପରିବାରରେ ଚଳାଇ ଦେଉ ନାହାନ୍ତି । ଚାକିରୀରେ ପୁନର୍ନିଯୁକ୍ତି ଦିଆଯାଉ ନାହିଁ ।

ଗାଁରେ ମେଳା ମଉଛବରେ ରୋଗୀ ତଥା ରୋଗୀର ପରିବାର ଲୋକଙ୍କ ସହିତ ମିଳାମିଶାରେ କଟକଣା ଅଛି । କୁଷ୍ଠରୋଗ ଭୋଗ କରୁଥିବା ଭିକାରୀମାନେ ରୋଗ ବ୍ୟାପିବାରେ ସାହାଯ୍ୟ କରୁଛନ୍ତି ବୋଲି ବହୁତ ଲୋକଙ୍କର

Digitized by srujanika@gmail.com

ଧାରଣା । ଏହିଭଳି ୧୮୯୮ ମସିହା କୁଷ୍ଠରୋଗୀ ଆଇନ ଅନୁସାରେ, କୁଷ୍ଠରୋଗୀମାନେ ସର୍ବସାଧାରଣ ଚଳପ୍ରଚଳ ସ୍ଥାନରେ ଗାଧୁଆ ପାଧୁଆ, ଲୁଗା ଧୋଇବା, ବସ୍ ଗାଡ଼ିରେ ଯିବା ମନାକରି ଯାଉଛି ।

ଏସବୁ କଥା ଭୁଲ । ପ୍ରକୃତରେ ଚିକିତ୍ସା ପରେ କୁଷ୍ଠରୋଗ ସଂପୂର୍ଣ୍ଣ ଭଲ ହୋଇ ଯାଇଥାଏ । ଯାହାକୁ ରୋଗ ହେଲା ସେ ଯଦି ଠିକ୍ ଠିକ୍ ଚିକିତ୍ସା ହୁଏ, ତେବେ ପରିବାରରେ କାହାକୁ ଡେଇଁବାର ସମ୍ଭାବନା ନାହିଁ । ଥରେ ରୋଗ ହେଲେ ଯେ କୌଣସି ସଂକ୍ରାମକ ରୋଗଭଳି ଏହାର ଚିକିତ୍ସା ହେବା ଆବଶ୍ୟକ । ଭିକାରୀ କୁଷ୍ଠରୋଗୀଙ୍କ ଦ୍ୱାରା ସାଧାରଣତଃ ରୋଗ ବ୍ୟାପେ ନାହିଁ । ୧୮୯୮ର କଳାକୁଷ୍ଠ ରୋଗ ଆଇନ ବର୍ତ୍ତମାନ ଭାରତର ସବୁ ରାଜ୍ୟରେ ବାତିଲ କରିଯାଇ ସାରିଲାଣି ।

## କୁଷ୍ଠରୋଗ ହେଲାବୋଲି ସନ୍ଦେହ କେବେ କରିବ—

ଚର୍ମରେ ଛିଟ ହେଲେ ଯଦି ସେଥିରୁ ଛୁଇଁବା ଶକ୍ତି କମିଯାଏ କିମ୍ବା ପ୍ରରିପ୍ରରି ଲୋପ ପାଏ, ହାତ ଗୋଡ଼ ଝିମ୍‌ଝିମ୍ ହେଲେ କିମ୍ବା ତମ୍ବା ରଙ୍ଗର ଛିଟ ସବୁ ମୁହଁ, ପିଠି, ପିଚ୍ଛରେ ହେଲେ କୁଷ୍ଠ ରୋଗ ସନ୍ଦେହ କରାଯାଏ ।

ଏଭଳି ହେଲେ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, କୁଷ୍ଠରୋଗ ଚିକିତ୍ସା ପାଇଁ ଥିବା ସ୍ୱତନ୍ତ୍ର କେନ୍ଦ୍ର, ପାରାମେଡ଼ିକାଲ ୱାର୍କର, ସ୍ୱାସ୍ଥ୍ୟ ସେବକଙ୍କ ସହିତ ପରାମର୍ଶ କରିବା

Digitized by srujanika@gmail.com

ବଢେଁଇଥାଏ । ବର୍ତ୍ତମାନ ସରକାରୀ ଯୋଜନା ଅନୁସାରେ କୁଷ୍ଠରୋଗର ସବୁ ଔଷଧ ଓ ଚିକିତ୍ସା ମାଗଣାରେ ମିଳୁଛି । ଏହାର ସଦୁପଯୋଗ ହେବା ଉଚିତ୍ ।

କୁଷ୍ଠ କେବଳ ମଣିଷମାନଙ୍କର ହୁଏ । ଅନ୍ୟ ପ୍ରାଣୀମାନଙ୍କୁ ପ୍ରାକୃତିକ ଉପାୟରେ ଏ ରୋଗ ହୁଏ ନାହିଁ । ବିଜ୍ଞାନାଗାରରେ, ବଜ୍ରକାପ୍ତା ଭଳି ଏକ ପ୍ରାଣୀ (ଆର୍ମାଡ଼ିଲୋ) ବଣମଣିଷ (ସିମ୍ପାଜି) ମାଙ୍କଡ଼ମାନଙ୍କ ଦେହରେ ଏହା କୃତ୍ରିମ ଉପାୟରେ କରାଯାଇ ପାରେ । କୁଷ୍ଠରୋଗ ଯେଉଁ ଜୀବାଣୁ ଦ୍ୱାରା ଉତ୍ପନ୍ନ ହୁଏ, ତାର ନାମ "ମାଇକୋ ବ୍ୟାକ୍‌ଟେରିଅମ୍ ଲେପ୍ରି ।" ମଣିଷ ଦେହରେ ଯେତେ ଜୀବାଣୁ ଜନିତ ରୋଗ ହୁଏ, ସେମାନଙ୍କ ଭିତରେ ଏହା ସବୁଠୁ ଜଟିଳ । ଦେହରେ କୁଷ୍ଠରୋଗ ଜୀବାଣୁ ପଶିଲା ପରେ କେତେଦିନ ପରେ ରୋଗ ବାହାରେ ତାହା ସଠିକ୍ ଜଣାନାହିଁ । ସବୁଠୁ କମ୍ ୩ ମାସ ପରେ ରୋଗ ବାହାରି ପାରେ, ସବୁଠୁ ବେଶୀ ୪୦ ବର୍ଷ ପରେ ମଧ୍ୟ ହୋଇପାରେ । ସାଧାରଣତଃ ଜୀବାଣୁ ପ୍ରବେଶର ୭ ବର୍ଷ ପରେ ରୋଗ ବାହାରେ ।

## କୁଷ୍ଠରୋଗର ବିଭିନ୍ନ ନାମ—

ଏହାକୁ ଇଂରାଜୀରେ 'ଲେପ୍ରସି', ଜର୍ମାନରେ 'ଅସାଜ୍', ଫରାସୀ ଭାଷାରେ 'ଲେପର'; ରୁଷିଆନ୍ ଭାଷାରେ 'ପ୍ରୋକାଜା', ଚୀନ୍ ଭାଷାରେ 'ପାପଂଗ୍', ଜାପାନୀରେ 'ରାଯ୍', ଆରବୀରେ 'ଯୁଦ୍ଧମ', ହିନ୍ଦିରେ 'କୁଷ୍ଠ' କହନ୍ତି ।

Digitized by srujanika@gmail.com

ଖ୍ରୀଷ୍ଟପୂର୍ବ ଛଅଶହ ମସିହାରେ ମହର୍ଷି 'ସୁଶ୍ରୁତ ସଂହିତା'ରେ ଏହି ରୋଗର ଲକ୍ଷଣ ବର୍ଣ୍ଣନା କରିଛନ୍ତି । ଖ୍ରୀଷ୍ଟ ଜନ୍ମର ଛଅଶହ ବର୍ଷ ପରେ ବାଗଭଟ୍ଟ ଏହି ରୋଗ ବର୍ଣ୍ଣନା କରି ଲେଖିଛନ୍ତି, ଏହି ଶବ୍ଦ ସଂସ୍କୃତର 'କୃଷ୍ଠାତ' କ୍ରିୟାରୁ ସୃଷ୍ଟି । 'କୃଷ୍ଠାତ'ର ଅର୍ଥ ଖାଇଯିବା । ଚୀନ ଦେଶରେ 'ନିକିଙ୍ଗ' ଖ୍ରୀଷ୍ଟପୂର୍ବ ୪ ଶହ ବର୍ଷ ପୂର୍ବେ ଏହି ରୋଗର ବିଶଦ ବର୍ଣ୍ଣନା କରିଛନ୍ତି । ସମ୍ରାଟ ଆଲେକଜାଣ୍ଡାରଙ୍କ ସୈନ୍ୟମାନେ ଏହି ରୋଗକୁ ଭାରତରୁ ମଧ୍ୟପ୍ରାଚ୍ୟକୁ ନେଇ ଯାଇଥିଲେ । ଏହା ଖ୍ରୀଷ୍ଟପୂର୍ବ ୩୨୭ରୁ୩୨୬ ମସିହା । ଖ୍ରୀଷ୍ଟୀୟ ୧୩୦୦ ୧୪୦୦ ମସିହା ବେଳକୁ ଏହି ରୋଗ ୟୁରୋପ ମହାଦେଶରେ ପ୍ରବଳ ଭାବରେ ବିସ୍ତାର ଲାଭ କରିଥିଲା । ବିସ୍ତୃତ ଚିକିତ୍ସା ପରେ ଏବେ ମଧ୍ୟ ୟୁରୋପର ପର୍ତ୍ତୁଗାଲ, ସ୍ପେନ, ଇଟାଲୀ ପ୍ରଭୃତି ଦେଶରେ ଏହା ସଂପୂର୍ଣ୍ଣ ଲୋପ ପାଇ ନାହିଁ । ଆଫ୍ରିକା ଓ ଦକ୍ଷିଣ ଆମେରିକାର ଦେଶଗୁଡ଼ିକରେ କୁଷ୍ଠରୋଗର ମାତ୍ରା ଏବେ ମଧ୍ୟ ଅଧିକ । ଆଫ୍ରିକାର କଳା ଲୋକମାନଙ୍କଦ୍ୱାରା ଏହା ଯୁକ୍ତରାଷ୍ଟ୍ର ଆମେରିକାକୁ ଚାଲି ଯାଇଥିଲା ।

## ଭାରତ ଓ କୁଷ୍ଠ ରୋଗ—

ଜନଗଣନା ଅନୁସାରେ ଭାରତରେ କୁଷ୍ଠରୋଗୀଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି ।

୧୯୬୧ ଜନଗଣନାରେ କୁଷ୍ଠରୋଗୀଙ୍କ ସଂଖ୍ୟା ଥିଲା ପ୍ରାୟ ପଚଶ ଲକ୍ଷ । ୧୯୭୧ରେ ଏହା ବଢ଼ିକରି ହେଲା ବତିଶ

Digitized by srujanika@gmail.com

ଲକ୍ଷ । ୧୯୮୧ରେ ଏହା ଥିଲା ୩୯ଲକ୍ଷ । ଏବେ ୪୦ଲକ୍ଷ ଲକ୍ଷ ହେଲାଣି । ତାମିଲନାଡ଼ୁ, ଓଡ଼ିଶା, ପଶ୍ଚିମବଙ୍ଗ, ଆନ୍ଧ୍ରପ୍ରଦେଶରେ ଏହି ରୋଗୀମାନଙ୍କର ସଂଖ୍ୟା ବେଶୀ । ତାମିଲନାଡ଼ୁ ରାଜ୍ୟରେ 'ଚଙ୍ଗଲପୁଟ' ବୋଲି ଏକ ଜିଲ୍ଲା ଅଛି । ସେଠାରେ ହଜାର ଲୋକରେ ୬୧ ଜଣ ଲୋକଙ୍କୁ କୁଷ୍ଠରୋଗ ଥିବାର ଜଣାଯାଇଛି । ସବୁ ଚିକିତ୍ସା ସତ୍ତ୍ୱେ ରୋଗୀଙ୍କ ସଂଖ୍ୟା କାହିଁକି ବଢ଼ିବାରେ ଲାଗିଛି କାରଣ ଜଣାପଡ଼ୁନାହିଁ । ଦ୍ରୁତ ଜନସଂଖ୍ୟା ବୃଦ୍ଧି ଏବଂ ଅଧିକ ଦିନ ବଞ୍ଚିବା ହେତୁ ରୋଗୀଙ୍କ ସଂଖ୍ୟା ବଢ଼ୁଛି ବୋଲି ଅନୁମାନ କରାଯାଇ ପାରେ ।

**ରୋଗର ଉତ୍ପତ୍ତି ଓ ବିସ୍ତାର—**

ଆଗରୁ କୁହାଯାଇଛି କୁଷ୍ଠରୋଗ କେବଳ ମଣିଷଠାରେ ହୁଏ ଅନ୍ୟ କୌଣସି ପ୍ରାଣୀଙ୍କୁ ହୁଏନାହିଁ । ମ୍ୟାଲେରିଆ, ଫାଇଲେରିଆ ପ୍ରଭୃତି ରୋଗର ପରଜୀବୀ (ପାରାସାଇଟ୍)ରୁ ରୋଗୀଠାରୁ ସୁସ୍ଥଲୋକ ପାଖକୁ ନେବାକୁ ମଶାମାନଙ୍କର ଦରକାର ହୁଏ । କୁଷ୍ଠରୋଗର ଜୀବାଣୁ କୀଟପତଙ୍ଗ ଓଡ଼ଶମାନଙ୍କ ଦ୍ୱାରା ବ୍ୟାପିବାର କୌଣସି ପ୍ରମାଣ ନାହିଁ । କୁଷ୍ଠରୋଗ କେବଳ ସଂକ୍ରାମକ କୁଷ୍ଠରୋଗୀଠାରୁ ସୁସ୍ଥ ଲୋକକୁ ଡିଏଁ । ଏହି ସଂକ୍ରମଣ ଦୃଷ୍ଟିରୁ କୁଷ୍ଠରୋଗୀଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଏ । ରୋଗୀର ଚର୍ମରେ ଓ ସ୍ନାୟୁରେ ଅଧିକ ଜୀବାଣୁ ଥିବା କୁଷ୍ଠରୋଗ (ମଲ୍ଟି ବାସିଲାରି ଲେପ୍ରସି) ଓ କମ୍ ଜୀବାଣୁ ଥିବା କୁଷ୍ଠରୋଗ (ପସିବାସିଲାରି ଲେପ୍ରସି)

Digitized by srujanika@gmail.com

ସାଧାରଣ ମଲ୍‌ଟି ବାସିଲାର୍‌ କୁଷ୍ଠରୋଗୀର ରୋଗ ବିଆଁଇବା ଶକ୍ତି ପସି ବାସିଲାର୍‌ କୁଷ୍ଠରୋଗୀଠାରୁ ପାଞ୍ଚଗୁଣରୁ ଦଶଗୁଣ । ତେଣୁ ଏଭଳି ରୋଗୀମାନେ ରୋଗ ବିସ୍ତାରର ମୂଳ ଉତ୍ସ ।

ସଂକ୍ରାମକ କୁଷ୍ଠରୋଗୀମାନଙ୍କ ସହିତ ଅତି ନିବିଡ଼ ଭାବରେ ଅଧିକ ବର୍ଷ ଚଳାଚଳ କଲେ ରୋଗ ହେବାର ସମ୍ଭାବନା । ଏଭଳି କେତେକ ଲୋକ ଅଛନ୍ତି ଯେଉଁ-ମାନଙ୍କର ଶରୀରରେ ରୋଗ ପ୍ରତିରୋଧ ଶକ୍ତି ଅପେକ୍ଷାକୃତ କମ୍‌, ସେଭଳି ଲୋକମାନେ ରୋଗୀ ସହିତ ଅକାଳେ-ସକାଳେ ଦୁଇଥର, ଥରେ ସଂପର୍କରେ ଆସିଲେ ମଧ୍ୟ ରୋଗ ହେବାର ସମ୍ଭାବନା ଅଛି । ପରିବାରରେ ସଂକ୍ରାମକ କୁଷ୍ଠରୋଗୀ ଥିଲେ, ରୋଗ ହେଇ ବା ସମ୍ଭାବନା ଅଧିକ ।

ଚର୍ମ ଅପେକ୍ଷା ନାକରୁ ଏହି ରୋଗ ଅଧିକ ବିଏଁ । ନାକରୁ ବାହାରୁଥିବା ସିଂଘାଣି ପାଣି, ଛିଙ୍କରେ କୋଟି କୋଟି ଜୀବାଣୁ ବାହାରନ୍ତି । ଜଣେ କୁଷ୍ଠରୋଗୀର ଛିଙ୍କରେ ଥରକେ 'ଦଶ-କୋଟି' ଜୀବାଣୁ ବାହାରି ପାରନ୍ତି । ଏହି ଜୀବାଣୁମାନେ ମଣିଷ ଶରୀର ବାହାରେ ଦିନ-ଦିନ ବଞ୍ଚିପାରନ୍ତି । ମୁଖ୍ୟତଃ ଏହିମାନେ ରୋଗର କାରଣ । ଛିଙ୍କର ଛୋଟ ଛୋଟ ବୁନ୍ଦା-ବୁନ୍ଦା ପାଣିରେ ଏହି ଜୀବାଣୁମାନେ ଭାସି ବୁଲୁଥିବାରୁ ଏଭଳି ପ୍ରକ୍ରିୟାକୁ ଡାକ୍ତରୀ ଭାଷାରେ କହନ୍ତି 'ଡ୍ରପଲେଟ୍‌' ସଂକ୍ରାମଣ ।

ରୋଗୀମାନଙ୍କ ସଂସ୍ପର୍ଶରେ ଆସୁଥିବା ସୁସ୍ଥ ଲୋକମାନେ ଏହି ଜୀବାଣୁଗୁଡ଼ିକୁ ପ୍ରଶ୍ୱାସରେ ଶୋଷି

Digitized by srujanika@gmail.com

ନିଅନ୍ତି । ଏହି ଜୀବାଣୁମାନେ ଛାତି ଭିତରେ ଥିବା 'ଫୁସ୍‌ଫୁସ୍'ରେ ପହଞ୍ଚିଲା ପରେ ରକ୍ତ ସାହାଯ୍ୟରେ ଶରୀରର ବିଭିନ୍ନ ଅଙ୍ଗକୁ ଚାଲିଯାଆନ୍ତି । ଘା, ଘଉଡ଼ ଥିବା, କଟିଥିବା କିମ୍ବା ଛିଡ଼ିଥିବା ଚମ ସଂସର୍କରେ ଏହି ଜୀବାଣୁମାନେ ଆସିଲେ ରୋଗ ମଧ୍ୟ ସୃଷ୍ଟି କରିପାରନ୍ତି । ଖାଦ୍ୟ ଓ ପାନୀୟ ଦ୍ୱାରା ପାକସ୍ଥଳୀ ଅନ୍ତନଳୀକୁ ଯାଇ ଏହି ଜୀବାଣୁମାନେ ରୋଗ ସୃଷ୍ଟି କରିପାରନ୍ତି ବୋଲି କେତେକ କୁଷ୍ଠରୋଗ ବିଶେଷଜ୍ଞଙ୍କ ମତ ।

କୁଷ୍ଠରୋଗର ଜୀବାଣୁ ପୁରୁଷର ଧାତୁ, ସ୍ତ୍ରୀର ଡିମ୍ବାଣୁ, ଗର୍ଭସ୍ଥ ଶିଶୁର ଫୁଲ ଏବଂ ଗର୍ଭସ୍ଥ ଶିଶୁଠାରେ ମଧ୍ୟ ମିଳିଛି । କିନ୍ତୁ ସେମାନେ ଗର୍ଭସ୍ଥ ଶିଶୁର ରୋଗ କରାଇବାର କୌଣସି ପ୍ରମାଣ ନାହିଁ । ରୋଗୀର ଲୁଗାପଟା ବାସନ କୁସନ, ଶେଯ ବ୍ୟବହାର କଲେ ମଧ୍ୟ ରୋଗ ଡେଇଁବାର ସମ୍ଭାବନା ଅଛି ।

କିନ୍ତୁ ଏସବୁ ସତ୍ତ୍ୱେ କୁଷ୍ଠରୋଗ ଜୀବାଣୁ, ଅନ୍ୟ ଜୀବାଣୁଙ୍କ ଭଳି 'ନିଆଁଗିଳା' ନୁହନ୍ତି । ଏମାନେ ଅପେକ୍ଷାକୃତ ଭଦ୍ର ଓ ସଂଯତ । ତରତରରେ ରୋଗ କରନ୍ତି ନାହିଁ । ରୋଗ ସୃଷ୍ଟି କରିବାକୁ ଏମାନେ ବ୍ୟସ୍ତ ନୁହନ୍ତି । ଅଧିକ ଦିନ ରକଘସ ହେଲେ ଅନନ୍ୟ ଉପାୟ ହୋଇ ରୋଗ କରନ୍ତି । ଏ ଜୀବାଣୁମାନେ ଅତ୍ୟନ୍ତ ସଂକ୍ରାମକ ହୋଇଥିଲେ, ଏ ରୋଗ ଯେତେ ଦିନରୁ ଅଛି ଆଉ ଏମାନଙ୍କ ବିଷୟରେ ମଣିଷର ଜ୍ଞାନ ଯେତେ ସୀମିତ, ସମସ୍ତଙ୍କୁ କୁଷ୍ଠରୋଗ

Digitized by srujanika@gmail.com

ହୋଇ ସାରନ୍ତାଣି । ତେଣୁ ଏ ରୋଗ ଜୀବାଣୁକୁ ଭୟକରିବା ଉଚିତ ନୁହେଁ । କିନ୍ତୁ ସତର୍କ ହେବା ନିହାତି ଆବଶ୍ୟକ ।

## କୁଷ୍ଠରୋଗ ବଂଶଗତ ନୁହେଁ—

କୁଷ୍ଠରୋଗ ପିଲା, ବଡ଼, ସ୍ତ୍ରୀ, ପୁରୁଷ ଭେଦଭାବ ରଖେ ନାହିଁ । ଏହା ବୟସ ଲିଙ୍ଗ ଭେଦରେ ସମସ୍ତଙ୍କ ହୋଇଥାଏ । ତେବେ ସ୍ତ୍ରୀ ଲୋକମାନଙ୍କ ଅପେକ୍ଷା ପୁରୁଷ ଲୋକଙ୍କ ଅଧିକ ହୁଏ । ଡାକ୍ତର ନୁରଉଦ୍ଦିନ ନାମକେ ଜଣେ କୁଷ୍ଠରୋଗ ବିଶେଷଜ୍ଞ ଭାରତରେ ଗବେଷଣା କରି ଜାଣିଛନ୍ତି ଯେ, ପୁରୁଷ ଲୋକମାନେ ସ୍ତ୍ରୀ ଲୋକମାନଙ୍କଠାରୁ ଦୁଇଗୁଣ ଅଧିକ କୁଷ୍ଠରୋଗ ଭୋଗ କରନ୍ତି । ଦଶବର୍ଷରୁ କୋଡ଼ିଏ ବର୍ଷର କିଶୋର କିଶୋରୀଙ୍କ ଦେହରେ କୁଷ୍ଠରୋଗ ହେବା କିମ୍ବା ଜଣକୁ ଥିଲେ ଅନ୍ୟ ଜଣକୁ ଡେଇଁବା ରୋଗୀଙ୍କ ସଂଖ୍ୟା ଅପେକ୍ଷାକୃତ କମ ।

ସେମାନଙ୍କ ସଂଖ୍ୟା ଶହେ ରୋଗୀରେ ମାତ୍ର ଦୁଇଭାଗ । ଉଭୟ ବାପା ଓ ବୋଉକୁ ସଂକ୍ରାମକ କୁଷ୍ଠରୋଗ ଥିଲେ ଜନ୍ମିତ ସନ୍ତାନକୁ ଯଦି ସେମାନଙ୍କଠାରୁ ଅଲଗା ରଖି ଲାଳନ ପାଳନ କରାଯାଏ, ତେବେ ସନ୍ତାନର କୁଷ୍ଠରୋଗ ହୁଏ ନାହିଁ । ପିଲା ଜନ୍ମ ବେଳକୁ ବାପା ବୋଉଙ୍କର ରୋଗ ଛୁଆଁଇବା ଶକ୍ତି କମାଇବା ପାଇଁ ଉପଯୁକ୍ତ ଔଷଧ ଚିକିତ୍ସା ଆବଶ୍ୟକ । ସେମାନଙ୍କର କୁଷ୍ଠରୋଗ ଯଦି ସଂକ୍ରାମକ ହୋଇ ନଥାଏ, ସେମାନଙ୍କଠାରେ ଯଦି

Digitized by srujanika@gmail.com

କୁଷ୍ଠ ରୋଗ ଜୀବାଣୁ କମ୍ ଥାଆନ୍ତି, ତେବେ ସନ୍ତାନ ରୋଗୀ ହେବାରୁ ବର୍ତ୍ତିଯାଏ ।

ଏଣୁ ଅନୁଧ୍ୟାନ ଓ ଗବେଷଣାରୁ ସଂପୂର୍ଣ୍ଣ ଜଣାପଡ଼ିଛି ଯେ କୁଷ୍ଠରୋଗ ବଂଶଗତ ନୁହେଁ କିମ୍ବା ଥରେ ସଂକ୍ରାମକ ରୋଗୀକୁ ଛୁଇଁ ଦେଲେ କୁଷ୍ଠରୋଗ ହୁଏ ନାହିଁ ।

**କାହାକୁ ଶୀଘ୍ର ହେବ, କାହାକୁ ହେବ ନାହିଁ —**

କୁଷ୍ଠରୋଗ କାହାକୁ ଶୀଘ୍ର ହେବ, କାହାକୁ ହେବ ନାହିଁ, ସେ ଦୃଷ୍ଟିରୁ ବିଚାର କଲେ, ସମାଜରେ ଆପାତତ ଦେଖାଯାଏ ଯେ ଏହା ସେପରି କିଛି ନିୟମ ମାନେନାହିଁ । ରୋଗୀ ସହିତ ମିଳାମିଶା କରୁଥିବା ଲୋକର କେବେ ରୋଗହୁଏ ନାହିଁ । ପୁଣି ନିଜ ଜାଣତରେ କେବେ ରୋଗୀ ସହିତ ନ ମିଶିଥିବା ଲୋକର ମଧ୍ୟ ହୁଏ ।

ଏବେ ସେ ବିଷୟରେ ନୂତନ ଗବେଷଣାରୁ କିଛି ତଥ୍ୟ ମିଳିଛି । ମଣିଷର ରକ୍ତରେ ଶ୍ୱେତ ରକ୍ତ କଣିକା ଅଛନ୍ତି । ଏହି ରକ୍ତ କଣିକାମାନେ ରୋଗ ବିରୋଧରେ ସବୁବେଳେ ସଂଗ୍ରାମ କରିଥାଆନ୍ତି । ସେହି ରକ୍ତ କଣିକାମାନଙ୍କ ମଧ୍ୟରେ ଏକ ପୁଷ୍ଟିସାର ପଦାର୍ଥ ଥାଏ । ତାର ନାମ ହିଷ୍ଟୋ ଲିଉକୋସାଇଟିକ ଆଣ୍ଟିଜେନ । ଠାରରେ ତାର ନାମ ଏଚ୍. ଏଲ ଏ. ଆଣ୍ଟିଜେନ । ଜିନ୍‌ରେ ଏହି ଆଣ୍ଟିଜେନର କେତେକ ଅଂଶର ଗୁଣାତ୍ମକମାନ କମିଗଲେ ସାଧାରଣ

Digitized by srujanika@gmail.com

କୁଷ୍ଠରୋଗ (ଟ୍ୟୁବରକୁଲଏଡ୍ ଲେପ୍ରସି) ହୋଇଥାଏ । ଏହି ପ୍ରକାର କୁଷ୍ଠରୋଗ ବିଶେଷ ସଂକ୍ରାମକ ନୁହେଁ । ଏଥିରେ ଅଧିକ ଜୀବାଣୁ ନ ଥାନ୍ତି । କିନ୍ତୁ ସଂକ୍ରାମକ କୁଷ୍ଠରୋଗ ପାଇଁ ଏଚ. ଏଲ. ଏ. ଟାଇପ ଜଣାପଡ଼ିନାହିଁ । ୟୁରୋପ, ଆମେରିକା, ଜାପାନ ଦେଶର ଲୋକମାନଙ୍କୁ ଅଧିକ କୁଷ୍ଠ ରୋଗହେବାର ସମ୍ଭାବନା । ସେମାନଙ୍କ ଦେହରେ ଏହି ଆଣ୍ଟି-ଜେନ୍‌ର ଗୁଣାତ୍ମକମାନ କମ୍ ଅଛି । ସେମାନଙ୍କର ରୋଗ ପ୍ରତିରୋଧ ଶକ୍ତି ନାହିଁ । କିନ୍ତୁ ସେ ଦେଶଗୁଡ଼ିକରେ ଉପଯୁକ୍ତ ଔଷଧ ଚିକିତ୍ସା ଓ ସ୍ୱାସ୍ଥ୍ୟର ଯତ୍ନ ନେବା ଫଳରେ ଏ ରୋଗ ପ୍ରାୟ ସମୂଳେ ଲୋପ ପାଇଲାଣି । ତିରିଶ କୋଟି ଲୋକ ବସବାସ କରୁଥିବା ଯୁକ୍ତରାଷ୍ଟ୍ର ଆମେରିକାରେ ମାତ୍ର ତିନି ହଜାର କୁଷ୍ଠରୋଗୀ ଅଛନ୍ତି । ସେଥିରୁ ମାତ୍ର ତିନିଶହ ସଂକ୍ରାମକ । ସେମାନେ କାରଭିଲର ଜାତୀୟ କୁଷ୍ଠରୋଗ ଚିକିତ୍ସା କେନ୍ଦ୍ରରେ ଚିକିତ୍ସିତ ହେଉଛନ୍ତି । ଏହି ରୋଗୀ-ମାନେ ମୁଖ୍ୟତଃ ଏସିଆ, ଆଫ୍ରିକାର ବିଦେଶୀ ଲୋକ ।

ଭାଗ୍ୟର କି ବିଡ଼ମ୍ବନା ! ଭାରତୀୟ ଓ ଆଫ୍ରିକୀୟ ଲୋକମାନଙ୍କର ଏହି ରୋଗକୁ ପ୍ରତିରୋଧ କରିବାର ଶକ୍ତି ଅଧିକ । କିନ୍ତୁ ଅନ୍ଧବିଶ୍ୱାସ, କୁଶିକ୍ଷା, ସ୍ୱାସ୍ଥ୍ୟ ଶିକ୍ଷାର ଅଭାବ ହେତୁ ଭାରତ ଓ ଆଫ୍ରିକାରେ ଲକ୍ଷ ଲକ୍ଷ ଲୋକ ଏ ରୋଗ ଭୋଗ କରୁଛନ୍ତି । ଆଗେ ବିଶ୍ୱାସ କରାଯାଉଥିଲା ବିଷୁବ-ମଣ୍ଡଳୀୟ ଉଷ୍ଣ ଜଳବାୟୁ ରୋଗକୁ ବଢ଼େଇବାରେ ସାହାଯ୍ୟ କରେ କିନ୍ତୁ ଏବେ ତାହା ଭୁଲ୍ ବୋଲି ପ୍ରମାଣିତ

Digitized by srujanika@gmail.com

ହୋଇଛନ୍ତି । ସ୍ୱାସ୍ଥ୍ୟ ଶିକ୍ଷା ସମ୍ବନ୍ଧୀୟ ସମୁଚିତ ଜ୍ଞାନ ଓ ଉପଯୁକ୍ତ ଔଷଧ ଚିକିତ୍ସା କେବଳ ଏହି ରୋଗକୁ ଲୋପ କରିପାରିବ ।

କେତେକ ଲୋକଙ୍କ ଧାରଣା ପଚିଲା ବାସି ଖାଦ୍ୟ, ଶୁଖୁଆ, ପଚା ମାଂସ ଖାଇଲେ କୁଷ୍ଠରୋଗ ହୁଏ । ଏହା ଭ୍ରମାତ୍ମକ ବୋଲି ପ୍ରମାଣିତ ହୋଇଛନ୍ତି । ଏହି ରୋଗ କରିବାରେ ଖାଦ୍ୟର କୌଣସି ଅବଦାନ ନାହିଁ । ଏ ରୋଗ କେବଳ ଜୀବାଣୁମାନଙ୍କ ଦ୍ୱାରା ହିଁ ହୋଇଥାଏ ।

## ପରିବେଶ –

ଆମ ଦେଶରେ ପରିବେଶ ହିଁ ଏହି ରୋଗ ବ୍ୟାପିବାର ମୁଖ୍ୟ କାରଣ । ବହୁ ଲୋକଙ୍କର ରହିବାକୁ ବଖରାଏ ଘର ନାହିଁ । ଘର ବୋଲି ଯାହାକୁ କହୁଛେ ତାହା ଶୋଇବା, ବସିବା, ରୋଷେଇ କରିବା, ଆଉ ଅନ୍ୟାନ୍ୟ ସବୁ କାମ କରିବା ପାଇଁ ସୂର୍ଯ୍ୟ, ଚନ୍ଦ୍ର ଦେଖାଯାଉଥିବା ଦଶ ଫୁଟରେ ପାଞ୍ଚ ଫୁଟ ଏକ ସ୍ଥାନ । ଏଭଳି ଏକ ସ୍ଥାନରେ ଜଣେ ସଂକ୍ରାମକ କୁଷ୍ଠରୋଗୀ ରହିଲେ ବର୍ଷ ବର୍ଷ ଧରି ତା ସହିତ ଏକାଠି ଚଳୁଥିବା ଲୋକମାନଙ୍କ ପ୍ରତି ରୋଗ ଡେଇଁବା ସ୍ୱାଭାବିକ । ଏ ପ୍ରକାର ପରିବେଶରୁ ମୁକ୍ତି ପାଇବାକୁ ହେଲେ ଦାରିଦ୍ର୍ୟ ଦୂରୀକରଣ ଯୋଜନାଗୁଡ଼ିକ ସୁଦୂରପ୍ରସାରୀ ହେବା ଉଚିତ ।

ସଂକ୍ରାମକ କୁଷ୍ଠରୋଗୀମାନେ ଆଧୁନିକ ଚିକିତ୍ସା ବିଜ୍ଞାନ ସମ୍ମତ ଔଷଧ ଖାଇ ଦେହରୁ କୁଷ୍ଠରୋଗର

Digitized by srujanika@gmail.com

ଜୀବାଣୁମାନଙ୍କୁ ମାରିବାପାଇଁ ଚେଷ୍ଟା କରିବା ଏକାନ୍ତ ଆବଶ୍ୟକ ।

## କୁଷ୍ଠ ରୋଗ ଅଭିଶାପ ନୁହେଁ—

ଜଣେ ସଂସ୍କୃତ ପଣ୍ଡିତ କହିଲେ, "ଶାସ୍ତ୍ର କ'ଣ ମିଛ ? ଋଷିଙ୍କ ଅଭିଶାପରେ ଶ୍ରୀକୃଷ୍ଣଙ୍କ ବଂଶଜ ଶାମ୍ବଙ୍କର କୁଷ୍ଠରୋଗ ହୋଇଥିଲା । ସେ ଉତ୍କଳର ଅର୍କକ୍ଷେତ୍ର କୋଣାର୍କଠାରେ ସୂର୍ଯ୍ୟ ପୂଜାକରି ରୋଗମୁକ୍ତ ହୋଇଥିଲେ । ଏହା ମହାଭାରତଠାରୁ ଆରମ୍ଭ କରି ବହୁ ପୁରାଣରେ ବର୍ଣ୍ଣିତ ହୋଇଛି । ସୂର୍ଯ୍ୟ ପୂଜାର ବିସ୍ତୃତି ତ ସେହିଠାରୁ ।"

ଜଣେ ଆଦିବାସୀ ଭଦ୍ରଲୋକ କହିଲେ, "କୁଷ୍ଠରୋଗ ଅଭିଶାପ ଅଟେ । ଏହା ମୋର ଆଖି ଦେଖା କଥା । ଆମ୍ଭର ଏଠାରେ ଜଣେ ଆଦିବାସୀ କନ୍ଧ ବୁଢ଼ାକୁ ପୁଲିସ ଜମାଦାର ମିଛଟାରେ ବହୁତ ବାଡ଼େଇଲା । ବୁଢ଼ା ପାଟିରୁ ବାହାରିଲା-ତୋର ହାତ ଗୋଡ଼ରେ କୋଷ୍ଠରୋଗ ହେଉ । ପାଞ୍ଚ ବର୍ଷରେ ପୁଲିସ ଜମାଦାର ହାତ ଗୋଡ଼ରେ ଖୋଡ଼ ଫୁଟିଗଲା । ଇଏ ଆଖିଦେଖା କଥା । ଏ କ'ଣ ମିଛ ? ଅଭିଶାପ ନୁହେଁ ଆଉ କ'ଣ ?"

ଜଣେ ଶିକ୍ଷକ କହିଲେ " ଆମ ପରିବାରରେ ଜଣେ ବୁଢ଼ାଙ୍କୁ ଘର କଳିତକରାଳ ମନୋମାଳିନ୍ୟ ଯୋଗୁଁ ତାଙ୍କ ପୁଅ ଟିକେ ପେଲିଦେଲେ । ସେଥିରେ ବୁଢ଼ା ରାଗି, ମୋତେ

Digitized by srujanika@gmail.com

ମାଇଲୁ ବୋଲି କହି, ତୋର ହାତରେ କୁଷ୍ଠରୋଗ ହେଉ ବୋଲି ଅଭିଶାପ ଦେଲେ । ବର୍ତ୍ତମାନ ବୁଢ଼ା ମରିଗଲେଣି । ପୁଅ କୁଷ୍ଠ ରୋଗାକ୍ରାନ୍ତ ହୋଇ ଚିକିତ୍ସିତ ହେଉଛନ୍ତି । ଦୁଇବର୍ଷ ଚିକିତ୍ସା ପରେ ଏବଂ ବୁଢ଼ାଙ୍କ ଆତ୍ମାର ପୂଜା ଅର୍ଚ୍ଚନା ପରେ ଈଶ୍ୱରଙ୍କ କୃପାରୁ ସେ ଭଲ ହୋଇ ଆସୁଛନ୍ତି ।"

କୁଷ୍ଠରୋଗ ଅଭିଶାପ ବୋଲି ବହୁ ଉଦାହରଣ । ନିଜ ନିଜ ପରିବାର ଆଖିଦେଖା କଥାର ସଚିତ୍ର ବର୍ଣ୍ଣନା । ପ୍ରକୃତରେ ଏହା କାକତାଳିକ ନ୍ୟାୟ । କୁଆ ଓ ତାଳର ଅକସ୍ମାତ ସଂଯୋଗ । କୁଆଟିଏ 'କା' 'କା' କରୁଥିବା ବେଳେ ତାଳ ଗଛରୁ ପାଚିଲା ତାଳଟିଏ ତଳକୁ ଖସିପଡ଼ିଲା । ତା ନୁହେଁ ଯେ ଯେତେବେଳେ କୁଆ ରାବିବ ସବୁଥର ପାଚିଲା ତାଳଟିଏ ତଳକୁ ପଡ଼ିବ ।

ସବୁ କଥା ମଣିଷର ଶିକ୍ଷା ସଂସ୍କାର ଓ ଜ୍ଞାନ ଉପରେ ନିର୍ଭର କରେ । ପ୍ରକୃତରେ ଆମେ ଆଖିରେ ଦେଖୁନାହିଁ କିମ୍ବା କାନରେ ଶୁଣୁନାହିଁ । ସବୁ ଇନ୍ଦ୍ରିୟର କାର୍ଯ୍ୟ ମସ୍ତିଷ୍କରେ ହିଁ ବିଚାର କରାଯାଏ । ଜଣେ ଇଞ୍ଜିନିୟରଙ୍କ ଡ୍ରଇଁ ଦେଖି ଆପଣ କିଛି ବୁଝିପାରନ୍ତି ନାହିଁ କିମ୍ବା ଗୋଟିଏ ଅଜଣା ଭାଷା ଶୁଣି କ'ଣ କହୁଛି ଜାଣିପାରନ୍ତି ନାହିଁ । ତେଣୁ ବହୁବର୍ଷର ଅପପ୍ରଚାର, କୁସଂସ୍କାର ଅଜ୍ଞତା ଯୋଗୁଁ କୁଷ୍ଠରୋଗ ଅଭିଶାପରୁ ହୁଏ ବୋଲି ଚର୍ଚ୍ଚିତ ହୋଇ ଆସିଛି ।

Digitized by srujanika@gmail.com

ଅଭିଶାପର ଭୟ ରହିବା ଉଚିତ । ସାମାଜିକ ଚଳଣି ଅନୁସାରେ ନିଜକୁ ଚଳାଇବା ଭଲ । କିନ୍ତୁ ପିତୃମାତୃ, ଗୁରୁଜନ ବ୍ରାହ୍ମଣ ଅଭିଶାପରୁ କୁଷ୍ଠରୋଗ ହୁଏ ବୋଲି ମିଥ୍ୟା ପ୍ରମାଣିତ ହୋଇ ସାରିଲାଣି । ମାନସିକ ଭାରସାମ୍ୟ ହରାଇଲେ ଯେ କୌଣସି ଲୋକ ବିରକ୍ତିରେ କାହାକୁ କେତେ କଥା କହିପାରେ । ସବୁ ଯଦି ହୁଅନ୍ତା ତେବେ ପୃଥିବୀରୁ ମଣିଷ ସମାଜ କେଉଁ କାଳରୁ ରୋଗରେ ଓ ମୃତ୍ୟୁରେ ନିଶ୍ଚିହ୍ନ ହୋଇସାରନ୍ତାଣି ।

## କୁଷ୍ଠ ରୋଗର କାରଣ—

ସବୁ ସଂକ୍ରାମକ ରୋଗ ଭଳି କୁଷ୍ଠ ରୋଗ ଗୋଟିଏ ଜୀବାଣୁ ଦ୍ୱାରା ହୁଏ । ଏହି ଜୀବାଣୁମାନେ ଭାରି ଛୋଟ । ସେମାନେ ଖାଲି ଆଖିରେ ଦେଖାଯାଆନ୍ତି ନାହିଁ । ରୋଗ ସ୍ଥାନରୁ କାଚ ସ୍ଲାଇଡ଼ରେ ଚର୍ମର କିଛି ଅଂଶ ନେଇ ରାସାୟନିକ ରଙ୍ଗ ଦେଇ ପରେ ଅଣୁବୀକ୍ଷଣ ଯନ୍ତ୍ର ତଳେ ଦେଖିଲେ ସେମାନେ ଛୋଟ ଛୋଟ 'ବାଡ଼ି' ଭଳି ଦେଖାଯାଆନ୍ତି ।

ୟୁରୋପ ମହାଦେଶରେ ନରୱେ ବୋଲି ଗୋଟିଏ ଦେଶ ଅଛି । ସେହି ଦେଶର 'ବର୍ଗେନ' ସହରରେ ଜଣେ ଜୀବ ବୈଜ୍ଞାନିକ ବାସ କରୁଥିଲେ । ତାଙ୍କର ନାମ, ଜି.ଏଚ୍.ଏ ହାନସେନ । ବତିଶ ବର୍ଷ ବୟସରେ ୧୮୭୩ ମସିହାରେ କୁଷ୍ଠ ରୋଗୀଙ୍କ ଚର୍ମରୁ ସେ ଏହି ଜୀବାଣୁ ଆବିଷ୍କାର କଲେ । ଏ ଏକ

Digitized by srujanika@gmail.com

ଯୁଗାନ୍ତକାରୀ ଆବିଷ୍କାର । ମଣିଷର ବୁଦ୍ଧି ଆରମ୍ଭରୁ ସେ କୁଷ୍ଠ ରୋଗକୁ ଚହ୍ନିଛି । ପୃଥିବୀର ସବୁ ସ୍ଥାନର ମଣିଷ ଏହାକୁ ପୂର୍ବଜନ୍ମର ଦୁଷ୍କୃତି, ଠାକୁରଙ୍କ କ୍ରୋଧ,ଗୁରୁଜନଙ୍କ ଅଭିଶାପ ଓ କର୍ମଫଳ ବୋଲି ବିଭିନ୍ନ ଭାଷାରେ ବର୍ଣ୍ଣନା କରିଛନ୍ତି । ଗୃହ ପାଞ୍ଚ ହଜାର ବର୍ଷଧରି ଚାଲି ଆସିଥିବା ଶାସ୍ତ୍ରବାଣୀକୁ ତାଙ୍କ ଗବେଷଣା ବିରୋଧ କଲା । ସମସ୍ତେ ତାଙ୍କ କଥାକୁ ବିରୋଧ କଲେ । ତଥା କଥିତ ଶାସ୍ତ୍ରଜ୍ଞ ପଣ୍ଡିତମାନେ ତାଙ୍କୁ 'ଗଣ୍ଡ ମୂର୍ଖ' ବୋଲି କହିବାକୁ ଲାଗିଲେ । ବାରମ୍ବାର ବିଭିନ୍ନ କୁଷ୍ଠରୋଗୀଙ୍କଠାରୁ ଏକା ପ୍ରକାର ଜୀବାଣୁ ପାଇ ଅଣୁବୀକ୍ଷଣ ଯନ୍ତ୍ର ତଳେ ଦେଖାଇଲେ ମଧ୍ୟ କେହି ବିଶ୍ବାସ କଲେ ନାହିଁ । ତଥାପି ମହାମନା ମହାପୁରୁଷ 'ହାନସେନ' ନିଜର ମତରେ ଅଟଳ ରହିଲେ । ଜନମତ ଆଗରେ ମୁଣ୍ଡ ନୁଆଁଇଲେ ନାହିଁ । ବହୁ ମହାପୁରୁଷ ପୃଥିବୀର ଗତିପଥ ବଦଳାଇ ଦେଇଛନ୍ତି । ଧର୍ମ ବିଜ୍ଞାନ, ସାହିତ୍ୟ ସମାଜ ନୀତି ସବୁ ଏହିଭଳି ଜଣେ ଜଣେ ମହାତ୍ମାଙ୍କ ଦ୍ୱାରା ସଂପୂର୍ଣ୍ଣ ରୂପେ ପରିବର୍ତ୍ତିତ ହୋଇଛି । ସବୁ ଶାସ୍ତ୍ର ଓ ବର୍ଣ୍ଣନାକୁ ମିଛ ପ୍ରମାଣକରି ସେ କହିଲେ କୁଷ୍ଠରୋଗ ଜୀବାଣୁ ଜନିତ । ସେ ଏହି ଜୀବାଣୁର ନାମ ଦେଲେ 'ମାଇକୋ ବ୍ୟାକ୍‌ଟେରିଅମ ଲେପ୍ରି' ଏବଂ ତାଙ୍କ ଗବେଷଣା ଏକ ପୁସ୍ତକରେ ଲିପିବଦ୍ଧ କଲେ ।

ସୂର୍ଯ୍ୟକୁ ମେଘ ସବୁବେଳେ ଢାଙ୍କି ରଖିପାରେ ନାହିଁ । ତା'ର ଠିକ୍ ଛଅବର୍ଷ ପରେ ୧୮୭୯ ମସିହାରେ ଜର୍ମାନ

Digitized by srujanika@gmail.com

ବର୍ଷ ବୟସ୍କ ଜର୍ମାନ ବୈଜ୍ଞାନିକ ଆଲବର୍ଟ ନାଇଜର କୁଷ୍ଠ ରୋଗର ଜୀବାଣୁକୁ 'ଜେନସିଆନ୍ ଭାଓଲେଟ୍' ଓ 'ଫକ୍‌ସିନ' ରଙ୍ଗଦେଇ ଅଣୁବୀକ୍ଷଣ ଯନ୍ତ୍ର ତଳେ ସବୁ ବୈଜ୍ଞାନିକଙ୍କୁ ଏହା ଦେଖାଇଲେ । ବିଭିନ୍ନ ବୈଜ୍ଞାନିକ ସଂସ୍ଥାନରେ ଯୋଗଦାନ କରି ସେ ତାଙ୍କର ଏହି ପ୍ରବନ୍ଧ ପାଠ କଲେ ଏବଂ କର୍ମଶାଳା-ଗୁଡ଼ିକରେ ଜୀବାଣୁକୁ ଅଣୁବୀକ୍ଷଣ ଯନ୍ତ୍ର ତଳେ ଦେଖାଇବାକୁ ସମର୍ଥ ହେଲେ ।

ସେତେବେଳେ ଜୀବାଣୁ ତତ୍ତ୍ୱ ଆଦୌ ବାହାରିନଥାଏ । ଏକଦମ ନୂଆ କଥା । ଜୀବାଣୁ ତତ୍ତ୍ୱର ଜନକ ତଥା ଯକ୍ଷ୍ମା-ରୋଗ ଜୀବାଣୁର ଆବିଷ୍କର୍ତ୍ତା ରବର୍ଟ କକ୍ ୧୮୮୫ ମସିହାରେ ଏହି ସବୁ ତଥ୍ୟର ପୁନର୍ବିନ୍ୟାସ କଲେ ।

ଜୀବାଣୁ ତଥ୍ୟ ଆସିଲା ଆଜକୁ ୧୧୪ ବର୍ଷ ହେଲାଣି । ସବୁ ଡାକ୍ତର କୁଷ୍ଠରୋଗ ବିଜ୍ଞାନୀ, କୁଷ୍ଠ ସେବା କରୁଥିବା ସମାଜସେବୀ ଏ ଜୀବାଣୁ ଦେଖିଲେଣି । ତଥାପି ସବୁ ଲୋକଙ୍କୁ ଏ ପର୍ଯ୍ୟନ୍ତ ବୁଝାଇପାରିନାହାନ୍ତି ।

## କୁଷ୍ଠରୋଗ ଶରୀରରେ ହୁଏ କିପରି ?

ସବୁ କୁଷ୍ଠ ରୋଗୀଙ୍କ ଶରୀରରେ ରୋଗ ଛଡ଼ାଇବା ପାଇ ଅଧିକ ଜୀବାଣୁ ନ ଥାନ୍ତି । ଯେଉଁ କେତେକ ପ୍ରକାର କୁଷ୍ଠରୋଗୀଙ୍କ ଠାରୁ ରୋଗ ଛଡ଼େ ତାକୁ ସଂକ୍ରାମକ କୁଷ୍ଠରୋଗ (ମଲ୍‌ଟି ବାସିଲାର ଲେପ୍ରସି) କୁହାଯାଏ । ଜଣେ ସୁସ୍ଥ

Digitized by srujanika@gmail.com

ଲୋକ ଯେତେବେଳେ ମଲଟି ବାସିଲାରୀ କୁଷ୍ଠ ରୋଗ ଭୋଗ କରୁଥିବା ରୋଗୀର ସଂପର୍କରେ ବାରମ୍ବାର ଆସେ, ସେତେ-ବେଳେ ରୋଗୀଠାରୁ ଜୀବାଣୁ ସୁସ୍ଥ ଲୋକ ଦେହରେ ପ୍ରବେଶ କରେ । ଏହି ଜୀବାଣୁମାନେ ସୁସ୍ଥ ଲୋକଙ୍କ ଦେହରେ ରୋଗ ସୃଷ୍ଟି କରନ୍ତି ।

ମଣିଷ ଶରୀର ଗୋଟିଏ ଯୁଦ୍ଧକ୍ଷେତ୍ର । ଏଥିରେ କୋଟି କୋଟି ଜୀବଙ୍କର ଦୈନିକ ହତ୍ୟା କରାଯାଏ ।

ସବୁଠାରୁ ନିରାମିଷାଷୀ ଅହିଂସ ସନ୍ନ୍ୟାସୀ ଶରୀରରେ ମଧ୍ୟ ଦୈନିକ ନିୟୁତ ନିୟୁତ ଜୀବ ମରନ୍ତି । ଏ ଭଳି ଯୁଦ୍ଧ କାର୍ଯ୍ୟ ନ ଚାଲୁଥିଲେ ମଣିଷକୁ ନିଜକୁ ମରିବାକୁ ପଡ଼ିବ । ଆପଣ ବୁନ୍ଦାଏ ଦହିକୁ ଅଣୁବୀକ୍ଷଣ ଯନ୍ତ୍ର ତଳେ ଦେଖିଲେ ସେଥିରେ ନିୟୁତ ନିୟୁତ ଜୀବ ଭାସୁଥିବାର ଦେଖିବେ । ନିଶ୍ୱାସ ପ୍ରଶ୍ୱାସରେ ସେଭଳି କୋଟି କୋଟି ଜୀବାଣୁ ପ୍ରତି ମୁହୂର୍ତ୍ତରେ ଶରୀରରେ ପ୍ରବେଶ କରୁଛନ୍ତି । ସେ ଜୀବାଣୁ-ମାନଙ୍କୁ ଯଦି ଶରୀର ମଧ୍ୟରେ ହତ୍ୟା ନ କରାଯାଏ ତେବେ ସେମାନେ ବଢ଼ିବାକୁ ଲାଗିବେ ଯାହା ଫଳରେ ଜୀବାଣୁ ଜନିତ ଯେତେ ରୋଗ, ଝାଡ଼ା, ଜର, ଯକ୍ଷ୍ମା, ନିମୋନିଆ ଠାରୁ ଆରମ୍ଭ କରି ହଜାର ହଜାର ପ୍ରକାର ସଂକ୍ରାମକ ରୋଗ ହେବ । ଆମେ ଯେ ସୁସ୍ଥ ରହୁଛେ ତାର କାରଣ ଆମ ଶରୀରର କିଛାପନ୍ଥ ଅଛି । ସହଜରେ ବାହାର ଶତ୍ରୁକୁ ହତ୍ୟା କରି ପାରୁଛି । ଏହା ଏକଛତ୍ରବାଦ ଶାସନ । ଶରୀରରେ ମିଳିମିଶି ରହି

Digitized by srujanika@gmail.com

ଗଣତନ୍ତ୍ରର କାରବାର ନାହିଁ । "ତୁମେ ରହିବ ନଚେତ୍ ମୁଁ ରହିବ" ନ୍ୟାୟରେ ଚାଲିବା କଥା ।

ଜୀବାଣୁ ଅଧିକ ରହିଲେ ଶରୀରର ମୃତ୍ୟୁ, ଶରୀର ବଞ୍ଚାଇବାକୁ ଚାହିଁଲେ ଜୀବାଣୁର ମୃତ୍ୟୁ । ଏହି ପରିପ୍ରେକ୍ଷୀରେ ପ୍ରତି ମଣିଷ ଯେତେ ଅହିଂସ ଆପଣ ବିଚାର କରନ୍ତୁ । ପ୍ରକୃତି ଆପଣଙ୍କ ଅଜାଣତରେ ଆପଣଙ୍କୁ ହିଂସ୍ର କରି ଗଢ଼ି ତୋଳିଛି । ତେଣୁ ମାଛ ମାଂସ ଖାଇବାରେ କି କ୍ଷୀର ପିଇବାରେ ହିଂସତା ନାହିଁ ବୋଲି ଲେଖକର ବିଶ୍ୱାସ ।

ଆମ ଦେଶରେ କୁଷ୍ଠରୋଗୀଙ୍କ ସଂଖ୍ୟା ଏତେ ବେଶି ଯେ ରାସ୍ତାରେ ଗଲାବେଳେ, ହାଟ, ବଜାର, ମନ୍ଦିର, ଅଫିସ, ରେଳ,ମଟର,ରିକ୍ସା,ଗୁଡ଼ିଆ ଦୋକାନ ସବୁଠାରେ ସଂକ୍ରାମକ କୁଷ୍ଠରୋଗୀଠାରୁ ସୁସ୍ଥ ଲୋକ ଦେହରେ ରୋଗ ଜୀବାଣୁ ପ୍ରବେଶ କରିବାର ଆଶଙ୍କା ଅଛି । ଏହି ନ୍ୟାୟରେ ଆମ ସମସ୍ତଙ୍କ ଶରୀରରେ ଏହି ଜୀବାଣୁ ବହୁ ସମୟରେ ପଶିଛନ୍ତି ।

କିନ୍ତୁ ବଡ଼ ସୁଖର କଥା ଶହେ ସୁସ୍ଥ ଲୋକଙ୍କ ଦେହରେ ଏହି ଜୀବାଣୁ ପ୍ରବେଶ କଲେ ସେଥିରୁ ପଞ୍ଚାନବେ ଲୋକଙ୍କର ରୋଗ ହେବା ପୂର୍ବରୁ ଶରୀର ଜୀବାଣୁମାନଙ୍କୁ ମାରିଦିଏ । ଏଭଳି ଲୋକଙ୍କର ସବୁଦିନ ପାଇଁ କୁଷ୍ଠରୋଗ ହୁଏ ନାହିଁ । ଶରୀର କୁଷ୍ଠରୋଗ ଜୀବାଣୁକୁ ଚିହ୍ନିଦିଏ, ପଶିଲାମାତ୍ରେ ସେମାନଙ୍କୁ ହତ୍ୟା କରାଯାଏ । ଏ ହେଲା 'ଆମେ ତୁମେ' ଶହେରେ ପଞ୍ଚାନବେ ଲୋକଙ୍କ ଶରୀର ଚର୍ଯ୍ୟାର କାହାଣୀ ।

Digitized by srujanika@gmail.com

ସବୁ ସଂକ୍ରାମକ ରୋଗପାଇଁ ଏଇ କଥା । ଜୀବାଣୁମାନେ ଶରୀରରେ ପଶିଛନ୍ତି । ସେମାନଙ୍କୁ ମାରି ଦିଆଯାଇଛି ।

ଆଉ ଯେଉଁ ଅଳ୍ପ ସଂଖ୍ୟକ ଲୋକ ରହିଲେ ସେମାନଙ୍କ ଦେହରେ ଭଲ ଜଣା ନ ପଡୁଥିବା ଛୋଟ ଛୋଟ ଛଉ ବାହାରେ କିମ୍ବା ଛୋଟ ଛୋଟ ଲାଲ ରଙ୍ଗର ଛଉ ହୁଏ । ଏହାକୁ ଅନିର୍ଣ୍ଣିତ କୁଷ୍ଠରୋଗ (ଇନ୍‌ଡିଟରମିନେଟ୍ ଲେପ୍ରସି) କୁହାଯାଏ । ଏହା ରୋଗର ଆରମ୍ଭ । ବହୁ ଡାକ୍ତର ଏବଂ ରୋଗୀ ଏହାକୁ ହେଲା କରିବାର ଆଶଙ୍କା ଅଛି । ଏହାର କାରଣ ଆମ ଦେଶରେ ପୁଷ୍ଟିହୀନତା ଜନିତ ଏଭଳି ଛଉ', 'ବୟସ ଛଉ' ବେଶୀ । ଏ ପ୍ରକାର କୁଷ୍ଠରୋଗର ଛଉ ଭିତରୁ ଅନେକ ବିନା ଚିକିତ୍ସାରେ ଆପେ ଆପେ ଭଲ ହୋଇଥାଆନ୍ତି । ଏଥିରୁ କେତେକଙ୍କର ସ୍ଥାୟୀ କୁଷ୍ଠରୋଗ ଡିଟରମିନେଟ ଲେପ୍ରସି ହୁଏ ।

ଏହି ଅନୁଧ୍ୟାନରୁ କଣ ଜଣା ପଡ଼ିଲା । ଜୀବନ କାଳ ମଧ୍ୟରେ ପ୍ରାୟ ପ୍ରତ୍ୟେକ ମଣିଷ ଶରୀରରେ କୁଷ୍ଠରୋଗର ଜୀବାଣୁ 'ମାଇକୋ ବ୍ୟାକ୍ଟେରିଅମ ଲେପ୍ରି''ର ପଶିବାର ସମ୍ଭାବନା ଅଛି । ସେଥିରୁ ଶହେରେ ପଞ୍ଚାନବେଙ୍କର କୌଣସି ରୋଗ ଲକ୍ଷଣ ହୁଏ ନାହିଁ । ଆଉ ତିନିଜଣଙ୍କର ଅସ୍ଥାୟୀ କୁଷ୍ଠରୋଗ ହୁଏ । ସେମାନେ ବିନା ଚିକିତ୍ସାରେ ଆପେ ଆପେ ଭଲ ହୋଇଯାଆନ୍ତି । ଆଉ ଦୁଇଜଣଙ୍କର ସ୍ଥାୟୀ କୁଷ୍ଠରୋଗ ହେବାର ସମ୍ଭାବନା ଅଛି । ହୋଇପାରେ,

Digitized by srujanika@gmail.com

ନହୋଇ ମଧ୍ୟ ପାରେ । ସ୍ଥାୟୀ କୁଷ୍ଠରୋଗ ( ପସିବାସିଲାରୀ ଲେପ୍ରସି )ର କେତେକ ମଧ୍ୟ ବିନା ଚିକିତ୍ସାରେ ଆପେ ଆପେ ଭଲ ହୋଇଯାଆନ୍ତି । ସେଭଳି କୁଷ୍ଠରୋଗଗୁଡ଼ିକ ହେଲେ ଟ୍ୟୁବର କୁଲଏଡ଼୍ ଲେପ୍ରସି, ସ୍ନାୟୁକୁ ଆକ୍ରାନ୍ତ କରୁଥିବା, ପ୍ରାଇମେରୀ ପଲି ନଉରାଇଟିକ୍ ଲେପ୍ରସି, ବର୍ଡ଼ରଲାଇନ ଟିଉବର କୁଲଏଡ଼୍ ଲେପ୍ରସି । ଶରୀରର ରୋଗ ନିବାରଣୀ ଶକ୍ତି ଅନୁସାରେ ଜୀବାଣୁମାନଙ୍କ ଭିତରୁ ଅତି କମ୍ ସଂକ୍ରାମକ କୁଷ୍ଠରୋଗ ରୋଗ କରାନ୍ତି-ଯାହାର ନାମ 'ଲେପ୍ରୋମାଟସ୍ ଲେପ୍ରସି' । ଏଭଳି ରୋଗୀମାନଙ୍କୁ ଅଧିକ ଦିନ ଚିକିତ୍ସା କରିବା ଦରକାର ପଡ଼ିଥାଏ ଏବଂ ଚିକିତ୍ସାରେ ମଧ୍ୟ ସେମାନେ ସଂପୂର୍ଣ୍ଣ ଭଲ ହୋଇଯାଆନ୍ତି ।

ଉଡ଼ଲେ ବୋଲି ଜଣେ କୁଷ୍ଠରୋଗ ବିଜ୍ଞାନୀ ଅଛନ୍ତି । ସେ ଚର୍ମରୁ, ନାକରୁ, ବିଭିନ୍ନ ଛଅସ୍ଥାନରୁ ଚର୍ମ ନେଇ ରଙ୍ଗ ଦେଇ ଜୀବାଣୁ କେତେ ଅଛନ୍ତି ପରୀକ୍ଷା କରନ୍ତି । ଏହାକୁ ଜୀବାଣୁ ସଙ୍କେତ ( ବ୍ୟାକ୍‌ଟେରିଓଲଜିକାଲ ଇଣ୍ଡେକ୍‌ସ ) କହନ୍ତି । ଯଦି ଏହି ସଙ୍କେତ ଦୁଇରୁ ଅଧିକ ଦେଖାଏ ତେବେ ରୋଗ ସଂକ୍ରାମକ –ଅଧିକ ଜୀବାଣୁଥିବା ଲେପ୍ରୋମାଟସ୍ ଲେପ୍ରସି । ଯଦି ଦୁଇରୁ କମ୍ ତେବେ ତାହା ସଂକ୍ରାମକ ନୁହେଁ, ସ୍ୱଳ୍ପ ଜୀବାଣୁ ଥିବା ଟ୍ୟୁବରକୁଲଏଡ଼୍ ଲେପ୍ରସି ।

Digitized by srujanika@gmail.com

## କୁଷ୍ଠରୋଗ ଚିହ୍ନିବ କିପରି ?

ଶରୀରର କୋଷ ମାଧ୍ୟମିକ ରୋଗ ନିବାରକ ଶକ୍ତି (ସେଲ ମିଡିଏଟେଡ୍ ଇମ୍ୟୁନିଟି) ଅନୁସାରେ କୁଷ୍ଠରୋଗ ଶରୀରରେ ବିଭିନ୍ନ ରୂପ ଧାରଣ କରେ । ବେଳେ ବେଳେ ବିଶ୍ୱାସ କର ହୁଏନାହିଁ ଯେ ଗୋଟିଏ ପ୍ରକାର ଜୀବାଣୁ ଏତେ ପ୍ରକାର ରୂପର ରୋଗ ସୃଷ୍ଟି କରିଛନ୍ତି କିପରି ? କାହାର ଛୋଟିଆ ଛଉଟିଏ ତ କାହାର ଚର୍ମିରି ଫଳ ଓହଳଲି ପରି ମୁହଁ କାନ ହାତଯାକ ଫଳିଯାଉଛି ।

କୁଷ୍ଠରୋଗକୁ ଲକ୍ଷଣ ଅନୁସାରେ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଏ । ଚମରେ ଅଧିକ ଜୀବାଣୁ ଥିବା କୁଷ୍ଠରୋଗ, ଚର୍ମରେ କମ୍ ଜୀବାଣୁ ଥିବା କୁଷ୍ଠରୋଗ । ଚର୍ମକୁ ବିଭିନ୍ନ ସ୍ଥାନରୁ କାଟି ଜୀବାଣୁକୁ ଗଣିଦେଇ (ବାୟୋପ୍ସି) ଏହା ନିରୂପଣ କରାଯାଏ । ଜୀବାଣୁ ସଙ୍କେତ ଦୁଇରୁ କମ୍ ଥିଲେ ତାକୁ କମ୍ ଜୀବାଣୁ ଥିବା କୁଷ୍ଠରୋଗ ଏବଂ ଦୁଇରୁ ବେଶୀ ଥିଲେ ତାକୁ ଅଧିକ ଜୀବାଣୁ ଥିବା କୁଷ୍ଠରୋଗ ବୋଲି ଚିହ୍ନାଯାଏ ।

କମ୍ ଜୀବାଣୁ ଥିବା କୁଷ୍ଠରୋଗକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଏ । ଇନ୍‌ଡିଟରମିନେଟ ଲେପ୍ରସି, ଟିଉବର-କୁଲଏଡ୍ ଲେପ୍ରସି ଓ -ବର୍ଡ଼ରଲାଇନ୍ ଟିଉବର କୁଲଏଡ୍ ଲେପ୍ରସି ।

Digitized by srujanika@gmail.com

## ଇନ୍‌ଡ଼ିଟରମିନେଣ୍ଟ ଲେପ୍ରସି—

ଏହା ମୁଖ୍ୟତଃ ଏକ ସାଦା ଛଉ କମ୍ବା ତନ ଚ୍ଛରଟି ଛୋଟ ଛୋଟ ଛଉ ରୂପେ ଦେଖାଯାଏ । ଏ ଛଉରେ ଚର୍ମ ଉପରକୁ ଉଠେ ନାହିଁ । ଛଉର ଚ୍ଛରକଡ଼ ଉଠି ରହେ ନାହିଁ, ତେଣୁ ସହଜରେ ଜଣାପଡ଼େ ନାହିଁ ।

ଛୁଇଁବା ଶକ୍ତି ବଶେଷ ନଷ୍ଟ ହୁଏ ନାହିଁ । ଚର୍ମ ବାୟୋପ୍‌ସି ପରୀକ୍ଷା କଲେ ମଧ୍ୟ ସାଧାରଣତଃ କୁଷ୍ଠରୋଗର ଜୀବାଣୁମାନେ ମିଳନ୍ତି ନାହିଁ । ବାରମ୍ବାର ପରୀକ୍ଷା କଲେ ଏବଂ ବହୁତ ସ୍ଥାନରୁ ଚର୍ମ ବାୟୋପସି କଲେ ଏହି ଜୀବାଣୁ ଚର୍ମର ସୂକ୍ଷ୍ମସ୍ନାୟୁରେ ଥିବାର କେତେବେଳେ କମିତି ଦେଖାଯାଏ । ଏଭଳି କୁଷ୍ଠରୋଗ ନର୍ଦ୍ଦିଷ୍ଟ ଭାବରେ ଚହ୍ନିବା ସବୁବେଳେ ଠିକ୍ ହୁଏ ନାହିଁ । ସେଥିପାଇଁ ବାରମ୍ବାର ପରୀକ୍ଷା ଛ ଛ ମାସ ଅନ୍ତରରେ କରିବା ଦରକାର ପଡ଼ିଥାଏ । ଏଭଳି କୁଷ୍ଠରୋଗ ବହୁ ସମୟରେ ମନକୁ ଭଲ ହୋଇଯାଏ । କିନ୍ତୁ ଯେଉଁମାନେ ଭଲ ନହୁଅନ୍ତି, ତାଙ୍କୁ ଅଧିକ ଦନ ଚକିତ୍ସା କରିବାକୁ ପଡ଼େ । ଇନ୍‌ଡ଼ିଟରମିନେଟ୍ ଲେପ୍ରସି ଭଲ ନ ହେଲେ ଅନ୍ୟ ପ୍ରକାର କୁଷ୍ଠରୋଗକୁ ଗତି କରିପାରେ । 'ଡିଟରମିନ୍' ଏକ ଇଂରାଜୀ ଶବ୍ଦ । ଏହାର ଅର୍ଥ ଚହ୍ନା ପଡ଼ିବା । ତେଣୁ ଭଲ ଭାବରେ ଚହ୍ନା ନ ପଡ଼ିଥିବା ଅବସ୍ଥାକୁ "ଇନ୍‌ଡ଼ିଟରମିନେଣ୍ଟ୍" ଲେପ୍ରସି କୁହାଯାଏ ।

Digitized by srujanika@gmail.com

## ଟିଉବର କୁଲଏଡ୍ ଲେପ୍ରସି—

୧୮୯୮ ମସିହାରେ ପ୍ରଥମେ ଏହି ଶବ୍ଦ ବ୍ୟବହାର କରାଗଲା । ଲେପ୍ରସି ସାଙ୍ଗରେ ପୁଣି ଟ୍ୟୁବର କୁଲୋସିସ୍ ବା ଯକ୍ଷ୍ମାରୋଗ କ'ଣ ? କାରଣ ଉଭୟଙ୍କର ଜୀବାଣୁ ଏକା ଉପାୟରେ ରଙ୍ଗ କରାଯାଏ, ଦେଖିବାକୁ ଦୁଇଟାଇ ଭଳି ସାମଞ୍ଜସ୍ୟ ଅଛି । ଟି· ବି· ରୋଗ ଭୋଗ କରୁଥିବା ଅଙ୍ଗକୁ ରଙ୍ଗଦେଇ (ବାୟୋପ୍‌ସି) ଅଣୁବୀକ୍ଷଣ ଯନ୍ତ୍ର ତଳେ ଦେଖିଲେ ଯେମିତି ଦେଖାଯାଏ, ଏ ରୋଗରେ ସେମିତି ଦେଖାଯାଏ । ଟି: ବି: ରୋଗ ଭିତରେ ଛେନାଭଳି ହୋଇ ଖାଇଯାଏ, ଏ ପ୍ରକାର କୁଷ୍ଠରୋଗରେ ସେଭଳି ହୁଏ-ନାହିଁ । ତେଣୁଥିପାଇଁ ଜର୍ମାନ ଚର୍ମରୋଗ ବିଶେଷଜ୍ଞ ଜଡ଼ାସନ ଏ ରୋଗର ନାମ ଦେଲେ ଟିଉବର କୁଲଏଡ୍ ଲେପ୍ରସି । ଭିତରେ ଟି. ବି· ଭଳି ଦେଖାଯାଉଥିବା କୁଷ୍ଠରୋଗ ।

ଏ ପ୍ରକାର କୁଷ୍ଠ ରୋଗ ଛଉ ଧଳା ନଚେତ୍ ଇଷତ୍ ଲାଲ ।

ଛଉ ଚମ ଠାରୁ ଉପରକୁ ଉଠିକରି ଥାଏ । ଧାର ଭଲ ଭାବରେ ଜଣାପଡେ । ଛଉ ଉପରେ ବାଳ ରୁହେନାହିଁ । ଶୁଖିଲା ରହେ । ଛୋଟବଡ଼ ଭେଦରେ ଗୋଟିଏରୁ ତିନୋଟି ପର୍ଯ୍ୟନ୍ତ ଛଉ ଥାଆନ୍ତି । ବେଳେବେଳେ ଅଧିକ ମଧ୍ୟ ରହି-ପାରନ୍ତି । ଏହି ଛଉଗୁଡ଼ିକରେ ସ୍ପର୍ଶ ଶକ୍ତି ରୁହେନାହିଁ, ଛଉ ସ୍ଥାନରେ ବାଳ ରହେନାହିଁ ବା ଗୋଟିଏ ଗୋଟିଏ ରୁହେ । ବେଳେବେଳେ ଗୋଟିଏ ଗୋଟିଏ ପାଖ ସ୍ନାୟୁ

Digitized by srujanika@gmail.com

ଫଳ ମୋଟା ହୋଇଯାଏ ଏବଂ ଏଥିରେ ବଥ ମଧ୍ୟ ହୋଇଯାଏ ।

ଏହି ପ୍ରକାର କୁଷ୍ଠରୋଗ ଗୋରା ଦେହରେ ନାଲ ଏବଂ କଳା ଦେହରେ ତମ୍ବା ରଙ୍ଗର ଦେଖାଯାଏ । ପିଲ୍‌ହିଲ୍ ଭଳି ଗୋଟିଏ ବଡ଼ ଛଉର ପାଖକୁ ଲାଗି ଛୋଟ ଛୋଟ ଛଉ ହୋଇ ପାରନ୍ତି । ରୋଗ ଏତେ ବଢ଼ିଲେ ମଧ୍ୟ ଏଭଳି କୁଷ୍ଠରୋଗୀର ଚର୍ମରେ ପ୍ରାୟ ଜୀବାଣୁ ନଥାନ୍ତି । ଏଭଳି ରୋଗୀମାନଙ୍କର 'ରିଆକ୍‌ସନ' ହେଲେ ଚର୍ମରେ ଜୀବାଣୁ ଆସନ୍ତି । ସେ ଅବସ୍ଥାରେ ରୋଗ ବ୍ୟାପିବାରେ ଏ ପ୍ରକାର ରୋଗୀମାନେ ସାହାଯ୍ୟ କରନ୍ତି । ନଚେତ୍ ଇନ୍‌ଡ଼ିଟରମିନେଟ୍ ଓ ଟିଉବରକୁଲଏଡ଼୍ ଲେପ୍ରସି ରୋଗ ବ୍ୟାପିବାରେ ସାହାଯ୍ୟ କରନ୍ତି ନାହିଁ । ଏଭଳି ପ୍ରକାର କୁଷ୍ଠରୋଗ ଭାରତରେ ସବୁଠୁ ବେଶୀ । ଟିଉବର କୁଲଏଡ଼୍ ଲେପ୍ରସି ରୋଗ କରୁଥିବା କେତେକ ରୋଗୀଙ୍କର ହାତ ଗୋଡ଼ର ମାଂସପେଶୀ ସରୁ ହୋଇଯାଏ । ହାତ ଗୋଡ଼ ପାରାଲିସିସ୍ ହୋଇ ବଙ୍କା ହୋଇଯାଏ । ଗ୍ଲକଲ୍‌ବେଲକୁ ଗୋଡ ବୁଲାଇ ପକାନ୍ତି । ହାତଟା କଣ୍ଟା ଗ୍ଲମୁଚ ଭଳି ଉଠି ରହେ । ଏପ୍ରକାର ରୋଗରେ କାମ କରୁଥିବା ବେଳେ ଜଣାପଡ଼େ ନାହିଁ । ଫଳରେ ଖଣ୍ଡିଆ ହୋଇ ଘା' ହେଲେ ଶୁଖେ ନାହିଁ । ଏ ପ୍ରକାର ରୋଗରେ ହାଡ଼ ଖାଇଯାଏ । ଏହା ମୁଖ୍ୟତଃ ପଲିନଉରାଇଟିକ୍ ଲେପ୍ରସି । ବହୁତ ସ୍ନାୟୁକୁ ରୋଗ ଜୀବାଣୁ-ମାନେ ଅଧିକ ମାତ୍ରାରେ ଆକ୍ରମଣ କରନ୍ତି । ଏ ରୋଗରେ ହାତ

Digitized by srujanika@gmail.com

ଗୋଡ଼ର ବୀଭତ୍ସତା ଓ ଦୁର୍ବଳତା ଉପୁଜିବାର କାରଣ । ସୁଖର କଥା, ଏଭଳି ରୋଗୀମାନଙ୍କ ମଧ୍ୟରୁ ଅନେକ ପ୍ରଥମାବସ୍ଥାରେ ଆପେ ଆପେ ଭଲ ହୋଇ ଯାଆନ୍ତି । ଆଉ କେତେକଙ୍କର ପ୍ରଥମାବସ୍ଥାରେ ଚିକିତ୍ସା ହେଲେ ରୋଗ ବଢ଼େନାହିଁ । ସଂପୂର୍ଣ୍ଣ ଭଲ ହୋଇଯାଏ । ହାତଗୋଡ଼ ବଙ୍କା ହୋଇଥିଲେ ମଧ୍ୟ "ପ୍ଲାଷ୍ଟିକ୍ ସର୍ଜରୀ" କରି ସିଧା କରାଯାଏ । ଏ ପ୍ରକାର ଅପରେସନ୍ ଆମ ରାଜ୍ୟରେ କରାଯାଏ ।

## ବଡର ଲାଇନ କୁଷ୍ଠରୋଗ

'ବଡ଼ର' ଗୋଟିଏ ଇଂରାଜୀ ଶବ୍ଦ । ଏହାର ଅର୍ଥ ସୀମା ସରହଦ୍ । ତେଣୁ ଏପ୍ରକାର କୁଷ୍ଠରୋଗ ସାଂଘାତିକ ଓ ସାମାନ୍ୟ ସାଧାରଣ କୁଷ୍ଠରୋଗର ମଝିଆମଝି । ଠିକ୍ ଠିକ୍ ଚିକିତ୍ସା ହେଲେ ଏ ରୋଗ ସାମାନ୍ୟ ସାଧାରଣ କୁଷ୍ଠରୋଗ ରୂପେ ରହେ । ଚର୍ମରେ ଜୀବାଣୁ ରହନ୍ତିନାହିଁ । ରୋଗୀ ବିକଳାଙ୍ଗ ହୁଅନ୍ତି ନାହିଁ । କିନ୍ତୁ ଠିକ୍ ଠିକ୍ ଚିକିତ୍ସା ନ ହେଲେ ଏହା 'ଲେପ୍ରୋମାଟସ' ଲେପ୍ରସିରେ ପରିଣତ ହୁଏ । ରୋଗ ବଢ଼ିଯାଏ । ରୋଗୀ ବିକଳାଙ୍ଗ ହେବାର ସମ୍ଭାବନା ଅଧିକ ।

ଏଭଳି ଅବସ୍ଥାରେ 'ଚର୍ମରେ ଲାଲ କିମ୍ବା ତମ୍ବା ବର୍ଣ୍ଣର ଅନେକ ଛଉ ରୁହନ୍ତି । ଛଉର ମଝିଟା ଉପରକୁ 'ଗମ୍ବୁଜ' ଭଳି ଫୁଲିଉଠେ । ଛଉର କଡ଼କୁ ରେପ୍ଟା ହୋଇ ଚର୍ମ ସହିତ ମିଶିଯାଏ । ଛଉଗୁଡ଼ିକ ଅତି ଅଧିକ ହୋଇଯା'ନ୍ତି ।

Digitized by srujanika@gmail.com

ଚର୍ମ ପରୀକ୍ଷା (ସ୍କିନ୍ ସ୍ମିୟର) କଲେ ଏଥିରେ ଜୀବାଣୁ ମିଳନ୍ତି । ଏଭଳି ରୋଗରେ କୁଷ୍ଠ ରୋଗର ଜୀବାଣୁମାନେ ଗ୍ରନ୍ଥି, ଯକୃତ, ମାଂସପେଶୀରେ ମଧ୍ୟ ମିଳିଥାଆନ୍ତି । କିନ୍ତୁ ସେମାନେ ସେଠାରେ ରୋଗ କରନ୍ତି ନାହିଁ ।

ଲେପ୍ରୋମାଟସ୍ ଲେପ୍ରସି—

ଚର୍ମରେ ଅଧିକ ଜୀବାଣୁ ଥିବା କୁଷ୍ଠରୋଗକୁ 'ଲେପ୍ରୋମାଟସ୍' କୁଷ୍ଠରୋଗ କୁହାଯାଏ । ଏହା ସବୁଠୁ ସାଂଘାତିକ କୁଷ୍ଠରୋଗ । କୁଷ୍ଠରୋଗର ଯାହାସବୁ ବୀଭତ୍ସତା ଏହି ରୋଗରେ ଅଧିକ ଦେଖାଯାଏ ।

ପ୍ରଥମ ଅବସ୍ଥାରେ ମୁହଁରେ, ଦେହରେ ଲାଲ ଲାଲ ଛଉ ଦେଖାଯାଏ, ଖରାତରାରେ ବୁଲିଲେ, କାମ କଲେ ଏହି ଛଉ ଅଧିକ ଲାଲ ହୋଇଯାଏ । ନାକ ବୁଜି ହୁଏ, ନାକରୁ ପାଣି ସିଂଘାଣି ବୁହେ । ବେଳେବେଳେ ନାକରୁ ରକ୍ତ ପଡ଼େ । କେତେକ ସମୟରେ ନାକ ଭିତରେ ଘା' ହୋଇଯାଏ । ନାକର ଆଗଟା ଚେପ୍ଟା ହୋଇ ମୁହଁକୁ ଅସୁନ୍ଦର କରେ । କେତେକଙ୍କର ମୁହଁ, କାନ, ଦେହରେ 'କୋଳି' ଭଳି ଫଳିଯାଏ । ଏହି ରୋଗର ଜୀବାଣୁ ସ୍ନାୟୁମାନଙ୍କୁ ଆକ୍ରମଣ କରି ଫୁଲାଇ ଦିଅନ୍ତି, ଫଳରେ ହାତଗୋଡ଼ ଝିମ୍ ଝିମ୍ ହୁଏ । ହାତ ପାଦରୁ 'ମୋଜା ପିନ୍ଧିବା' ଅଞ୍ଚଳତକ ଗୋଦରା ହୋଇଯାଏ । କେତେକ ରୋଗୀଙ୍କର ହାତ ବଙ୍କା ହୋଇଯାଏ ।

Digitized by srujanika@gmail.com

ଆଉ କେତେକ ରୋଗୀ ଗୋଡ଼ ବୁଲାଇ ବୁଲାଇ ପକାନ୍ତି । ଗୋଡର ସ୍ନାୟୁ 'ପାରାଲିସିସ୍' ହୋଇଥିବାରୁ ଏପରି ହୁଏ । ଏହି ରୋଗରେ ଆଖିପତାରୁ ବାଳ ଉପୁଡ଼ିଯାଏ । କେତେବେଳେ ଆଖିରେ ଫୁଲ୍ ପଡ଼ିଯାଏ । ଦେହସାରା ଲାଲ, ଧଳା ଛଉ ବ୍ୟାପିଯାଏ । ଏଭଳି ଅବସ୍ଥାରେ ରୋଗୀର ଦେହରେ ଜୀବାଣୁମାନେ ବ୍ୟାପିଯାଆନ୍ତି । ସେମାନେ ଲୁହ, ସିଂଘାଣି, ଚମ ଘା', ଖଙ୍କାର, ମା'ର କ୍ଷୀର, ଝାଡ଼ା ସବୁଥିରେ ମିଳନ୍ତି । ଯଦିଓ ସାଧାରଣ କୁଷ୍ଠରୋଗ ମୁଖ୍ୟତଃ ଚର୍ମ ଓ ସ୍ନାୟୁର ରୋଗ, ତେବେ ଲେପ୍ରୋମାଟସ୍ ଲେପ୍ରସି ସାରା ଶରୀରର ରୋଗ । ଏହି ରୋଗରେ ଶରୀର ଭିତରେ ଥିବା ଗ୍ରନ୍ଥି (ଲିମ୍ଫ୍ ଗ୍ଲାଣ୍ଡ), ଯକୃତ୍, ପ୍ଳୀହା ବୃକକ୍ ପୁରୁଷର ଅଣ୍ଡକୋଷ, ହାଡ଼, ଦାନ୍ତ, ମାଂସପେଶୀ ଆକ୍ରାନ୍ତ ହୋଇ-ପାରନ୍ତି । କେତେକ ପୁରୁଷ ରୋଗୀଙ୍କର ଅଣ୍ଡକୋଷ ରୋଗାକ୍ରାନ୍ତ ହେଲାପରେ ସେମାନେ ପୁରୁଷ ସୁଲଭ 'ହରମୋନ୍' ଆଉ ସୃଷ୍ଟି କରିପାରନ୍ତି ନାହିଁ । ଫଳରେ ସେମାନଙ୍କ ସ୍ତନ ବୃଦ୍ଧିପାଇ ତାହା ନାରୀ ସ୍ତନ ଭଳି ଦିଶେ ।

ଆଖି ପତାରୁ ବାଳ ଉପୁଡ଼ି, ନାକ ଚେପ୍ଟା ହୋଇ ମୁହଁଟା ଅପେକ୍ଷାକୃତ ଲମ୍ବା ଦେଖାଯାଏ । ଏହାକୁ 'ସିଂହମୁହଁ' କୁହାଯାଏ । ଠିକ୍ ଠିକ୍ ଚିକିତ୍ସା ନ ହେଲେ କୋଳ ଭଳି ଫଳଥିବା ଚମସବୁ ଘା' ହୋଇଯାଏ । ଯତ୍ନ ଅଭାବରୁ ଏସବୁ ଘା'ରେ ମାଛି ଡିମ୍ବ ଦିଅନ୍ତି । ଡିମ୍ବ ରୁଳୁଆ ଫୁଟି ଚଳଲାବେଳେ

Digitized by srujanika@gmail.com

ଏହାକୁ 'ପୋକ ପଡ଼ିବା' କୁହାଯାଏ । ଏହା ଏକ ଭୟାବହ ଦୃଶ୍ୟ । କେବଳ ଅତ୍ୟଧିକ ଦାରିଦ୍ର୍ୟ ଓ ସ୍ୱାସ୍ଥ୍ୟ, ଶିକ୍ଷାର ଅଭାବ ଏହାର କାରଣ । ଏଭଳି ହେଲେ 'ପ୍ରାମ୍ୟର୍ଣ୍ଣିତ' ନକରି ଉପଯୁକ୍ତ ଚିକିତ୍ସା କରିବା ଏକାନ୍ତ ଆବଶ୍ୟକ । କିନ୍ତୁ ଏଭଳି ହେଲେ ଗାଁ ଗଣ୍ଡାରେ ପିଛିଲା "ପାପକାର୍ଯ୍ୟ" କହିବା ଦରକାର ପଡ଼େ ।

ଲେପ୍ରୋମାଟସ୍ ଲେପ୍ରସି, କୁଷ୍ଠରୋଗମାନଙ୍କ ମଧ୍ୟରେ ସବୁଠୁ ଅଧିକ ସଂକ୍ରାମକ । ଏହି ରୋଗରେ ଚମରେ ଅଧିକ ଜୀବାଣୁ ଥାଆନ୍ତି । ବେଳେବେଳେ ଏ ରୋଗ ଅପେକ୍ଷାକୃତ ସୁସ୍ଥ ଅବସ୍ଥାରେ ଥାଇ ହଠାତ୍ ବଢ଼ିଯାଏ । ତାକୁ 'ରିଆକ୍ସନ୍' କହନ୍ତି । ଶରୀରର କୋଷମାନଙ୍କରେ ରୋଗ ପ୍ରତିରୋଧକ ଶକ୍ତି ଅଛନ୍ତି । ରିଆକ୍ସନ୍ ଅବସ୍ଥାରେ ସେଗୁଡ଼ିକର ପରିବର୍ତ୍ତନ ହୁଏ ।

## ରିଆକ୍ସନ୍ କ'ଣ ?

ସାଧାରଣ ଅର୍ଥରେ 'ରିଆକ୍ସନ୍' ଯାହା ବୁଝାଏ, ଏହା ତାହା ନୁହେଁ । ବେଳେବେଳେ ଔଷଧ ଖାଇ ବାନ୍ତି ହେଲେ, ଝାଡ଼ା ହେଲେ, ମୁଣ୍ଡ ବୁଲାଇଲେ, ଦେହ ହାତ କୁଣ୍ଡାଇ ହେଲେ ଔଷଧ ପ୍ରତିକୂଳ ଅବସ୍ଥା (ରିଆକ୍ସନ୍) ସୃଷ୍ଟି କଲା ବୋଲି କୁହାଯାଏ । ପଦାର୍ଥ ବିଜ୍ଞାନରେ ପ୍ରତି କାର୍ଯ୍ୟ (ଆକ୍ସନ୍) ପାଇଁ ତା'ର ଠିକ୍ ସେତିକି ବିରୋଧ (ରିଆକ୍ସନ୍) ଅଛି ବୋଲି ବର୍ଣ୍ଣନା କରାଯାଇଛି । କିନ୍ତୁ କୁଷ୍ଠରୋଗରେ ଏହା ସ୍ୱତନ୍ତ୍ର ।

Digitized by srujanika@gmail.com

କୁଷ୍ଠରୋଗ ତ ଜଟିଳ, ଦୀର୍ଘଦିନ ସ୍ଥାୟୀ । ସାଧାରଣ କୁଷ୍ଠରୋଗରେ ଦୁଇ ପ୍ରକାରର ଛଉ ଥାଇ ରୋଗୀ ଚିକିତ୍ସା ହେଉଥିବ, ରୋଗ କମୁଥିବ । କୁଆଡ଼ୁ କିଛି ନଥାଇ ହଠାତ୍ ଛଉସବୁର ସଂଖ୍ୟା ବଢ଼ିଯିବ, ଗଣ୍ଠିସବୁ ଦରଜ ହୋଇ ଚାଲିବା ଅସମ୍ଭବ ହୋଇଯିବ । ଭୁସ୍ ଭୁସ୍ ହୋଇ ଜର ମାଡ଼ିଆସିବ । ସୁସ୍ଥଲୋକ ଦେହରେ ୧୦୪° ଜର । ଦେହମୁଣ୍ଡ ଏଭଳି ବିନ୍ଧାବିନ୍ଧି ହେବ ଯେ, ରୋଗୀ ସମ୍ଭାଳି ପାରିବ ନାହିଁ । ଚମ ଛଉ ସବୁରେ ପୂଜ ହୋଇ ଘା' ହୋଇଯିବ ।

ଆଖିରେ 'ପୁଅ' ଘର ଆକ୍ରାନ୍ତ ହୋଇ ଜଣେ ଅନ୍ଧ ହୋଇଯାଇପାରେ । କେତେକଙ୍କ ଦେହରେ ଫୁଲିଯାଇ ସେଗୁଡ଼ିକ ଘା' ହୋଇଯାଆନ୍ତି । ଛଉସବୁ ବଢ଼ି ଅଧିକା ଲାଲ ହୋଇଯାଆନ୍ତି । କେତେକ ଛଉରେ ପୂଜ ହୋଇଯାଏ । ଏହିଭଳି ସାଂଘାତିକ ଅବସ୍ଥାକୁ 'ରିଆକ୍‌ସନ୍' କୁହାଯାଏ ।

ଔଷଧ ଖାଉଥିଲାବେଳେ ମାନସିକ ଅଶାନ୍ତି, ଗର୍ଭାବସ୍ଥା ଓ ଆଦ୍ୟଯୌବନରେ ମ୍ୟାଲେରିଆ, ଜୀବାଣୁଜନିତ ରୋଗ ସମୟରେ ଏହା ହୋଇପାରେ । ପ୍ରକୃତରେ 'ରିଆକ୍‌ସନ୍'' ଔଷଧର ରିଆକସନ୍ ନୁହେଁ । ଏହା କୁଷ୍ଠରୋଗର ଅନ୍ୟ ଏକ ସାଂଘାତିକ ଅବସ୍ଥା । ଏଭଳି ହେଲେ ରୋଗୀ ଔଷଧ ବନ୍ଦ କରିବା ଉଚିତ ନୁହେଁ । ଏହାର ଚିକିତ୍ସା ପାଇଁ ସ୍ୱତନ୍ତ୍ର ଔଷଧ ଅଛି । ସେଗୁଡ଼ିକ ଡାକ୍ତରଙ୍କୁ ପଚାରି ମୂଳ ଔଷଧ ସହିତ ମିଶାଇ ଖାଇବା ଉଚିତ । ଏହି ଔଷଧଗୁଡ଼ିକ ହେଲେ,

Digitized by srujanika@gmail.com

ଆମ୍ପ ଶନ୍, ପାରାସିଟାମଲ, କ୍ଲୋରୋକ୍ୱିନ, କଟିକୋ ଷ୍ଟିରଏଡ଼୍, ଥାଲିଡ଼ୋମାଇଡ଼୍, ହାନ୍‌ସେପ୍ରାନ୍ ଇତ୍ୟାଦି ବିଶେଷଜ୍ଞ ଡାକ୍ତରମାନେ ମୁଖ୍ୟତ ଏହି ଔଷଧରୁ ହିଁ ଚିକିତ୍ସା କରିଥାନ୍ତି ।

## କେଉଁ କେଉଁ ରୋଗକୁ କୁଷ୍ଠରୋଗ ଚିହ୍ନଟ କରାଯାଏ—

କୁଷ୍ଠରୋଗଠାରୁ ଚିହ୍ନଟ କରାଯାଇଥିବା ଅନ୍ୟ ରୋଗ ଗୁଡ଼ିକ ହେଲେ ଧବଳକୁଷ୍ଠ, ବୟସ ଛଉ, କେତେକ ସାଧାରଣ ଯାଦୁ, କଲକାରଖାନାରେ କାମକରୁଥିବା ଶ୍ରମିକମାନଙ୍କର ରାସାୟନିକ ପଦାର୍ଥ ଲାଗି ହୋଇଥିବା ଛଉ, ପୁଷ୍ଟିହୀନତା ଜନିତ ଛଉ । ଏ ରୋଗଗୁଡ଼ିକ ହେଲେ ସାଧାରଣ ଛଉ ସମ୍ବନ୍ଧୀୟ ।

କୁଷ୍ଠରୋଗରେ ଯେଉଁ ଛଉଗୁଡ଼ିକ ଚର୍ମ ଉପରେ ଅଧିକ ଉଠ କରି ରହିଥାନ୍ତି, ସେଗୁଡ଼ିକ ମଇଁଷିଆ ଯାଦୁ, ସିଫିଲିସ ଭଳି ଯୌନରୋଗ, ଭିଟାମିନ୍ ଅଭାବରୁ ହେଉଥିବା ପେଲାଗ୍ରା ରୋଗ, ସାଂଘାତକ ସୋରିଆସିସ, ରୋଗରୁ ଅଲଗା କରାଯାଏ ।

## କେଉଁ କେଉଁ ରୋଗରୁ କୁଷ୍ଠରୋଗକୁ ଅଲଗା କରାଯାଏ—

ଯେଉଁ ମାନଙ୍କ ଦେହରେ "କୋଳ" ଭଳି ଫଳ ଯାଇଥାଏ, ସେମାନଙ୍କୁ ସିଫିଲିସ୍ ଭଳି ଯୌନ ବ୍ୟାଧି, ଲିଭର୍ ଓ ପ୍ଲୀହା ଫୁଲି ଚର୍ମପାକ ଫଳ ସାଧାରଣ ଜର ହେଉଥିବା

Digitized by srujanika@gmail.com

'କଳାଜ୍ୱର', ରକ୍ତ କାନ୍‌ସରରେ ଚର୍ମରେ ଫଳଯାଇଥିବା ଅବସ୍ଥାରୁ ଅଲଗା କରାଯାଏ । ଏଭଳି ଗହେରୁ ଉର୍ଦ୍ଧ୍ୱରୋଗ ଅଛି ଯାହାକୁ କୁଷ୍ଠରୋଗରୁ ଅଲଗା କରାଯାଏ । ସବୁପ୍ରକାର ରୋଗ ଚିହ୍ନିବାର ସ୍ୱତନ୍ତ୍ର ବ୍ୟବସ୍ଥା ଅଛି, ଝାଡ଼ା ପରୀକ୍ଷା, ରକ୍ତର ବିଭିନ୍ନ ପରୀକ୍ଷା' ଚର୍ମର ସ୍ମିୟର, ଚର୍ମର ବାୟୋପ୍‌ସି, ପ୍ରତି ରୋଗକୁ ଅଲଗା ଅଲଗା କରିବାରେ ସାହାଯ୍ୟ କରିଥାଏ । ଆଧୁନିକ ଚିକିତ୍ସାରେ ସବୁପ୍ରକାର ଉପରଲେଖା ରୋଗଗୁଡ଼ିକ ଆୟତ୍ତ କରାଯାଇପାରୁଛି । ତେଣୁ ଭୟଭୀତ ହେବାର ଅବକାଶ ନାହିଁ । ସାଧାରଣ ଛଉ ଏବଂ ଯନ୍ତ୍ରଣା ହେଉନାହିଁ ବୋଲି ବେଶି ବିଳମ୍ବ କରିବା ଉଚିତ ନୁହେଁ । ସରକାରୀ ଡାକ୍ତରଖାନାରେ ମାଗଣାରେ ଏହା ଦେଖାଇ-ଦେବା ଉଚିତ ଓ କେତେକ ସାଧାରଣ ପରୀକ୍ଷା କରାଇ ନେବା ଭଲ । ଏହାଫଳରେ ରୋଗ ଆରମ୍ଭରେ ଚିହ୍ନାଯାଏ ।

**କୁଷ୍ଠରୋଗ ହୋଇଛି ବୋଲି ନିର୍ଦ୍ଦିଷ୍ଟ ଭାବରେ ଚିହ୍ନାଯାଏ କିପରି ?**

ରୋଗ ବଢ଼ିଗଲା ପରେ କୁଷ୍ଠରୋଗ ଚିହ୍ନିବାରେ କୌଣସି ଅସୁବିଧା ହୁଏ ନାହିଁ, କିନ୍ତୁ ପ୍ରାରମ୍ଭିକ ଅବସ୍ଥାରେ ରୋଗ ଚିହ୍ନିବାରେ ଡାକ୍ତରମାନଙ୍କୁ ଅସୁବିଧା ହୋଇଥାଏ । କାରଣ ରୋଗର ପ୍ରଥମ ଅବସ୍ଥାରେ ସବୁ ଲକ୍ଷଣ ପ୍ରକାଶ ପାଇ ନ ଥାଏ ।

Digitized by srujanika@gmail.com

## କୁଷ୍ଠରୋଗର ଚିହ୍ନୋଟି ଚିହ୍ନ—

୧) ଚର୍ମର ଯେଉଁ ସ୍ଥାନରେ କୁଷ୍ଠ ରୋଗ ହୁଏ, ସେଠାରେ ସ୍ପର୍ଶ ଶକ୍ତି କମିଯାଏ ।

୨) ରୋଗସ୍ଥାନର ସ୍ନାୟୁ (ନଭ) ଗୁଡ଼ିକ ଫୁଲି ଯାଆନ୍ତି, ଦରଜ ହୁଅନ୍ତି ଏବଂ କେତେକ ସମୟରେ ନଷ୍ଟ ହୋଇ-ଯାଆନ୍ତି । ହାତଗୋଡ଼ର ସ୍ନାୟୁଗୁଡ଼ିକ ପରାଲିସିସ୍ ହେଲେ ସେମାନେ ଯେଉଁ ଅଞ୍ଚଳରେ କାର୍ଯ୍ୟ କରନ୍ତି, ସେ ଅଞ୍ଚଳଟି ସ୍ପର୍ଶ ଶୂନ୍ୟ ହୁଏ, ସେଠାରେ ଝାଳ ବୁହେ ନାହିଁ ଏବଂ ମାଂସପେଶୀ ପାରାଲିସିସ୍ ହୋଇ ସେହି ନିର୍ଦ୍ଦିଷ୍ଟ ଅଙ୍ଗ ଅଚଳ ହୁଏ ।

୩ କୁଷ୍ଠରୋଗ ଅଞ୍ଚଳରୁ ଚର୍ମ ନେଇ ପରୀକ୍ଷା କଲେ ସେଥିରେ କୁଷ୍ଠରୋଗର ଜୀବାଣୁ ମିଳନ୍ତି । ଜୀବାଣୁମାନଙ୍କ ବିଷୟରେ ଭଲଭାବରେ ଜାଣିବାକୁ ସାଧାରଣତଃ ସେଗୁଡ଼ିକୁ ଉପଯୁକ୍ତ ମାଧ୍ୟମରେ ଚାଷ କରାଯାଏ । ଏହାକୁ ଜୀବାଣୁ 'କଲ୍ଚର' କହନ୍ତି । କିନ୍ତୁ କୁଷ୍ଠରୋଗର ଜୀବାଣୁକୁ ରାସାୟନିକ ମାଧ୍ୟମ କିମ୍ବା ଜୈବ ରାସାୟନିକ ମାଧ୍ୟମରେ ଚାଷ କରାଯାଇପାରେ ନାହିଁ । ଏହା କେବଳ ଜିଅନ୍ତା ପ୍ରାଣୀମାନଙ୍କ ଦେହରେ ଚାଷ କରାଯାଇଥାଏ । ସେ ପ୍ରାଣୀ-ଗୁଡ଼ିକ ହେଲେ ଆମ ଦେଶରେ ବଜ୍ରକାପଟା, ମାଙ୍କଡ଼ ଓ ଯୁକ୍ତରାଷ୍ଟ୍ର ଆମେରିକାରେ ବଜ୍ରକାପଟାଭଳି ଦେଖାଯାଉଥିବା ଏକ ପ୍ରାଣୀ । ନାମ ତା'ର "ପାଙ୍ଗୋଲିନ୍" । ଏଭଳି

Digitized by srujanika@gmail.com

ପ୍ରାଣୀମାନଙ୍କ ପାଇବା କଷ୍ଟସାଧ୍ୟ ହେତୁ ଭାରତର ବଙ୍କାନା-ଗାରଗୁଡ଼ିକରେ କୁଷ୍ଠରୋଗ ଜୀବାଣୁ ଗବେଷଣ କରିବା ପ୍ରାୟ ଅସମ୍ଭବ ହୋଇ ପଡ଼ୁଛି ।

ତେଣୁ ନିର୍ଦ୍ଦିଷ୍ଟ ଲକ୍ଷଣ ଓ ଚିହ୍ନ ନ ଥିଲେ 'କୁଷ୍ଠରୋଗ' ବୋଲି କହିଦେବା ଭଲ କଥା ନୁହେଁ । ପ୍ରଥମ ଅବସ୍ଥାରେ ଉପର ତିନୋଟି ତଥ୍ୟକୁ ବିଚାରକୁ ନେଇ କୁଷ୍ଠରୋଗ ଚିହ୍ନିବା ଆବଶ୍ୟକ ।

## ରୋଗୀ ପରୀକ୍ଷା କିପରି କରାଯାଏ ?

ଚର୍ମ ପରୀକ୍ଷା—ରୋଗୀ ଚମକୁ ଉଜ୍ଜ୍ୱଳ ଦିନ ଆଲୁଅରେ ଦେଖିବା ଉଚିତ । ପ୍ରଥମେ ଛଉକୁ ସିଧା ଦେଖାଯାଏ ଏବଂ ପରେ ବଙ୍କେଇ କରି ଗୋଟିଏ ପାଖରୁ ଦେଖାଯାଏ । ଫଳରେ ଛଉଟି ଚମ ଉପରେ ଉଠିରହିଛି କି ନାହିଁ ସହଜରେ ଜଣାଯାଏ । ଛଉ ଧଳା, ଈଷତ୍ ଲାଲ୍ କିମ୍ବା ତମ୍ବାଳିଆ ରଙ୍ଗର ହୋଇପାରେ ।

ଏହି ଛଉକୁ ପ୍ରଥମେ ଛୁଇଁଲେ 'ଜାଣିବାର ଶକ୍ତି' କମିଯାଏ—ତା'ପରେ ଗରମ, ଥଣ୍ଡା ବାରିବାର ଶକ୍ତି କମିଯାଏ । ଶେଷରେ ଯନ୍ତ୍ରଣା ଠଉରାଇବା ଏବଂ ଚିପିଲେ ଓଜନ ଜାଣିବାର ଶକ୍ତି ନଷ୍ଟ ହୋଇଯାଏ । ଏହା ସାଧାରଣତଃ ତୁଳୀରେ ଓ 'ଆଲ୍‌ପିନ' କଣ୍ଟାରେ ଫୁଟାଇ ପରୀକ୍ଷା କରାଯାଏ ।

Digitized by srujanika@gmail.com

ପ୍ରତ ରୋଗୀର ସ୍ପର୍ଶ ଶକ୍ତି, ଥଣ୍ଡା ଗରମ ଜାଣିବା ଉତ୍ତାପ ଶକ୍ତି ଓ ଯନ୍ତ୍ରଣା ଅନୁଭବ କରବା ଶକ୍ତିର ପରୀକ୍ଷା କରବା ଆବଶ୍ୟକ । କାରଣ ବେଳେ ବେଳେ ଏହି ତନପ୍ରକାର ଶକ୍ତିରୁ ଯେ କୌଣସି ଶକ୍ତି ଆଗ ନଷ୍ଟ ହୋଇପାରେ । ଏହା ବ୍ୟତୀତ ରୋଗାକ୍ରାନ୍ତ ଚମ ଉପରେ 'ବାଳ' ଅଛି କି ନାହିଁ 'ଝାଳ' ବୋହୁଛି କି ନାହିଁ ମଧ୍ୟ ପରୀକ୍ଷା କର ଦେଖିନେବା ଉଚିତ । ଏହି ସାଧାରଣ ପରୀକ୍ଷାଗୁଡ଼ିକରେ ଚର୍ମରେ ଅଳ୍ପ ଜୀବାଣୁ ଥିବା 'ଟ୍ୟୁବରକୁଲଏଡ୍ ଲେପ୍ରସି' ସହଜରେ ଚିହ୍ନାପଡେ ।

ସ୍ନାୟୁ ପରୀକ୍ଷା—ବେକ, ହାତ ଓ ଗୋଡ଼ର ସ୍ନାୟୁ ଗୁଡକୁ ସାଧାରଣତଃ ପରୀକ୍ଷା କରାଯାଏ । ବେକମୂଳେ, କହୁଣୀ ତଳେ, ଆଣ୍ଠୁତଳେ ଏହାକୁ ପରୀକ୍ଷା କଲେ ଏହି ସ୍ନାୟୁଗୁଡ଼ିକ ମୋଟା ହୋଇ 'ଦଉଡ଼ି' ଭଳି ଲାଗନ୍ତି । ବେଳେ ବେଳେ ଏହି ସ୍ନାୟୁ ଭିତରେ ବଥା ହୋଇଯାଇପାରେ ଏବଂ ଚିପିଲେ କାଟେ ।

ଜୀବାଣୁ ପରୀକ୍ଷା—କୁଷ୍ଠରୋଗ ସନ୍ଦେହ କଲେ ଚମର ଜୀବାଣୁ ପରୀକ୍ଷା କରବା ଉଚିତ । କାନପଳି, ନାକଦଣ୍ଡା, ସିଙ୍ଘାଣି, ହାତ ଆଙ୍ଗୁଳିର ପଛପଟ ଏବଂ ଛଉ ସ୍ଥାନରୁ ସାଧାରଣତଃ ଚର୍ମ ପରୀକ୍ଷା କରାଯାଏ ଏବଂ ସେଥିରେ ଜୀବାଣୁ ଅଛନ୍ତି କି ନାହିଁ ରଙ୍ଗ ଦେଇ ଦେଖାଯାଏ ।

ବାୟୋପ୍ସି ପରୀକ୍ଷା—ଚର୍ମ ଓ ସ୍ନାୟୁକୁ ଭଲ ଭାବରେ କାଟି ରଙ୍ଗଦେଇ ସାଧାରଣତଃ 'ବାୟୋପ୍ସି' ପରୀକ୍ଷା

Digitized by srujanika@gmail.com

କରାଯାଏ । ଏହି ପରୀକ୍ଷା ବସ୍ତୁକୁ ଅଣୁବୀକ୍ଷଣ ଯନ୍ତ୍ର ତଳେ ଦେଖିଲେ ସେଥିରେ ରୋଗ ଅଛି କି ନାହିଁ ସହଜରେ ଜଣାପଡ଼େ ।

ଏହା ବ୍ୟତୀତ ଅନ୍ୟ କେତେକ ସ୍ୱତନ୍ତ୍ର ପରୀକ୍ଷା ଅଛି । ସ୍ନାୟୁ ବୋହୁଛି କି ନାହିଁ ଜାଣିବା ପାଇଁ "ପାଇଲୋ କାର୍ପିନ୍" ଇଂଜେକ୍‌ସେନ ଦିଆଯାଏ । ରୋଗୀର ରୋଗ ବିରୋଧି ଶକ୍ତି ଅଛି କି ନାହିଁ ଜାଣିବାପାଇଁ "ଲେପ୍ରୋମିନ୍" ଟେଷ୍ଟ କରାଯାଏ ।

ରୋଗ ଶରୀରରେ ଅଛି କି ନାହିଁ ଜାଣିବା ପାଇଁ ରକ୍ତ ପରୀକ୍ଷା କରାଯାଏ । ସେ ପରୀକ୍ଷାର ନାମ, ଫ୍ଲୋରେସେଣ୍ଟ୍ ଲେପ୍ରସି ଆଣ୍ଟିବଡ଼ି ଆବଜରଭେସନ୍ ଟେଷ୍ଟ । ଆଣ୍ଟିବଡ଼ି ଅର୍ଥ ରୋଗରୁ ପ୍ରତିରକ୍ଷାକାରୀ ଶକ୍ତି । ଲେପ୍ରସି ବା କୁଷ୍ଠରୋଗରୁ ରକ୍ଷା ପାଇବାର ଶକ୍ତି ଏହି ରାସାୟନିକ ପରୀକ୍ଷାରେ ସହଜରେ ଜଣାପଡ଼େ ।

ଆଜିକାଲି ଟାଁ ଗହଳରେ, ପରୀକ୍ଷା ସ୍ଥାନରେ ହଠାତ୍ ରୋଗ ବିଷୟରେ ଜାଣିବାକୁ ଏକ "ସ୍କିନ୍‌ଟେଷ୍ଟ୍" ବାହାରିଲାଣି । ଏଥିରେ ଲୋକଠାରେ କୁଷ୍ଠରୋଗ ବିରୋଧି ଶକ୍ତି ଅଛି କି ନାହିଁ ସହଜରେ ଜଣାପଡ଼େ । ଏହା ଅପେକ୍ଷାକୃତ ବ୍ୟୟବହୁଳ ।

Digitized by srujanika@gmail.com

## କୁଷ୍ଠ ରୋଗରେ ଚିକିତ୍ସା

କୁଷ୍ଠରୋଗ ହୋଇଛି ବୋଲି ଜାଣିଲା ପରେ, ଆମ ଦେଶରେ ରୋଗୀମାନେ ଅଧୈର୍ଯ୍ୟତା ପ୍ରକାଶ କରନ୍ତି । କେହି କେହି କାନ୍ଦି ପକାନ୍ତି । କେହି କେହି ରୋଗର ଭବିଷ୍ୟତ କଳ୍ପନା କରି ବ୍ୟସ୍ତ ହୋଇ ପଡ଼ନ୍ତି । ତେଣୁ କୁଷ୍ଠ ରୋଗୀଙ୍କୁ ଚିକିତ୍ସା କଲାବେଳେ ଧୈର୍ଯ୍ୟ, ଅଧ୍ୟବସାୟ ଓ ଗଭୀର ବୁଝାମଣା ପ୍ରକାଶ ପାଇବା ଉଚିତ । ରୋଗୀ ଚିକିତ୍ସିତ ହେଉଥିବାବେଳେ ସେ ମାନସିକ ତଥା ନୈତିକ ସାହସ ଓ ସାହାଯ୍ୟ ପାଇବା ଆବଶ୍ୟକ । ମାନସିକ ଓ ନୈତିକ ସାହାଯ୍ୟ ରୋଗ କମେଇବାରେ ବହୁତ ଅଧିକ ସାହାଯ୍ୟ କରିଥାଏ ।

ରୋଗୀମାନେ ଦୁଧ, ଛେନା, ମାଛ, ମାଂସ ଆଦି ପୁଷ୍ଟିସାର ଖାଦ୍ୟ ଖାଇବା ଉଚିତ । ଏ ରୋଗରେ ବହୁରୋଗୀ 'ଆମିଷ' ଛାଡ଼ି ଦେଇଥା'ନ୍ତି । ସେଭଳି କରିବାରେ କୌଣସି ବୈଜ୍ଞାନିକ କାରଣ ନାହିଁ । ବରଂ ପୁଷ୍ଟିସାର ଯୁକ୍ତ ସୁଷମ ଖାଦ୍ୟ ଶରୀରରେ ରୋଗ ପ୍ରତିରୋଧ କରିବାରେ ଅଧିକ ସାହାଯ୍ୟ କରେ । ଆମ ଦେଶର ଲୋକମାନଙ୍କର ରକ୍ତ ହୀନତା (ଆନମିଆ) ଅଧିକ ଦେଖାଯାଏ । ରକ୍ତରେ ଶୋଣିମା (ହିମୋଗ୍ଲୋବିନ୍) ମାପି ରକ୍ତ ହୀନତା ମାତ୍ରା ଜଣାଯାଏ । ଜଣେ ସୁସ୍ଥ ଲୋକର ଶହେ ସିସି ରକ୍ତରେ ଚଉଦରୁ ଷୋଳ ଗ୍ରାମ୍ (ହିମୋଗ୍ଲୋବିନ୍) ରହିବା ଆବଶ୍ୟକ ।

Digitized by srujanika@gmail.com

ଯଦି ଏହି ହିମୋଗ୍ଲୋବିନ୍ ମାତ୍ରା ଦଶ ଗ୍ରାମ୍‌ରୁ କମ୍ ହୁଏ, ତାକୁ ମଧ୍ୟମ ଧରଣର ରକ୍ତହୀନତା କୁହାଯାଏ, ଛଅ ସାତ ଗ୍ରାମ୍‌ରୁ କମ୍ ହେଲେ ତାକୁ ସାଂଘାତିକ ରକ୍ତହୀନତା କୁହାଯାଏ । ରକ୍ତହୀନତା ଲାଗି ରହିଲେ ପୁଷ୍ଟିକର ଖାଦ୍ୟ ଖାଇବା ଆବଶ୍ୟକ । କୁସଂସ୍କାର ହେତୁ 'ଅଇଁଷ' ଛାଡ଼ିବା ଦରକାର ନାହିଁ । ଏହାବ୍ୟତୀତ ଏହି ରୋଗୀମାନଙ୍କର ରକ୍ତ-ହୀନତାର କାରଣ ଅଙ୍କୁଶୀକୃମି (ହୁକ୍‌ଓ୍ୱାର୍ମ) ମଧ୍ୟ ହୋଇ-ପାରେ । ଯେଉଁମାନଙ୍କର ଝାଡ଼ା ପରୀକ୍ଷାରେ ଅଙ୍କୁଶ କୃମି ଥାଆନ୍ତି, ସେମାନଙ୍କୁ ପାଇରେଣ୍ଟେଲ ବଟିକା (ହେକ୍‌ସା ସାଇଡ୍) ତିନୋଟି ଖାଇବାକୁ ଦିଆଯାଇଥାଏ । ଦେହରେ ରକ୍ତ ହେବାକୁ ଆଇରନ୍ ବଟିକା (ମାତ୍ରା-ଫୋଲିନ୍ ଆଇରନ୍) ଭିଟାମିନ୍ 'ବି' କଂପ୍ଲେକ୍‌ସ ବଟିକା ମଧ୍ୟ ଦିଆଯାଏ ।

ଏଭଳି ରୋଗୀଙ୍କୁ ଅପେକ୍ଷାକୃତ ଅଲଗା ରଖିବା ଦରକାର । ସେମାନଙ୍କର ରହିବାଘର, ଲୁଗାପଟା, ତଉଲିଆ ଖଟିଆ, ଖାଇବା ବାସନ ଅଲଗା ହେଲେ ଭଲ । ଏମାନେ ସୁସ୍ଥ ଲୋକଙ୍କ ସଙ୍ଗରେ ଅଧିକ 'ରଜଘସ' ହେବା ଉଚିତ ନୁହେଁ । ବିଶେଷତଃ ପରିବାରର ପିଲାଛୁଆଙ୍କ ସହିତ ବେଶୀ ମିଶାମିଶି କରିବା ଉଚିତ ନୁହେଁ । ସର୍ବୋପରି ଏହି ରୋଗୀ-ମାନଙ୍କର ହୃଦ୍‌ବୋଧ ହେବା ଆବଶ୍ୟକ ଯେ ସେମାନେ ନିୟମିତ ବଟିକା ଓ ଔଷଧ ଖାଇବା ଆବଶ୍ୟକ । ଯେତେଦିନ ପାଇଁ ଔଷଧ ଖାଇବାକୁ ନିର୍ଦ୍ଦେଶ ଦିଆଯାଇଛି ତାହା ପୂରଣ କରିବା ଆବଶ୍ୟକ । କୁଷ୍ଠରୋଗ ପାଇଁ ନିର୍ଦ୍ଦିଷ୍ଟ

Digitized by srujanika@gmail.com

ଔଷଧ ଖାଇବା ପୂର୍ବରୁ ରୋଗୀର ରକ୍ତ ଶୋଣିମା (ହିମୋ-ଗ୍ଲୋବିନ୍) ଅତି କମ୍‌ରେ ଶହେ ଶିଶି ରକ୍ତରେ ଦଶ ଗ୍ରାମ୍ ରହିବା ଉଚିତ। ଏସବୁ ହେଲା ଆନୁସଙ୍ଗିକ ଚିକିତ୍ସା।

ନିର୍ଦ୍ଦିଷ୍ଟ ଚିକିତ୍ସା

କଳି ଷଠା ଷାଠିଏ। ତେଣୁ ଗୋଟିଏ ପୁରୁଷ ହାରି-ହାରି ଷାଠିଏ ବର୍ଷ। ଆମର ଏପର୍ଯ୍ୟନ୍ତ ପାଞ୍ଚ ହଜାର ବର୍ଷ ତଳର ଇତିହାସ ମିଳୁଛି । ତା'ମାନେ ପ୍ରାୟ ଆଠଶହ ପୁରୁଷର ଇତିହାସ ଆମେ ଜାଣୁଛେ। ଏହି ଆଠଶହ ପୁରୁଷ ହେଲାଣି କୁଷ୍ଠରୋଗର ଭୟାବହତା ମଣିଷ ଜାଣିଲାଣି। ସଭ୍ୟ ମଣିଷ ରୋଗୀମାନଙ୍କର ଚିତ୍ର, ଗୁମ୍ଫାରେ, ପଥରରେ ତାଳପତ୍ରରେ, ଭୂର୍ଜପତ୍ରରେ କରିଛି। କିନ୍ତୁ ଆପଣ ଜାଣି ଆଶ୍ଚର୍ଯ୍ୟ ହେବେ, କୁଷ୍ଠରୋଗ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ଔଷଧ ବାହାରିଲା ପ୍ରାୟ ଗୋଟିଏ ପୁରୁଷ ହେବ। ତେଣୁ ଆଠଶହ ପିଢ଼ି ଧରି ଗଢ଼ି ଆସିଥିବା ଅନ୍ଧବିଶ୍ୱାସକୁ ଗୋଟିଏ ପିଢ଼ିରେ କଟାଯାଇ ପାରିବ କିପରି ? ତେଣୁ କୁଷ୍ଠରୋଗ ଚିକିତ୍ସାର ସଫଳତା ଜନସାଧାରଣ ଗ୍ରହଣ କରି ପାରୁନାହାନ୍ତି।

୧୯୪୧ ମସିହା ପର୍ଯ୍ୟନ୍ତ କୁଷ୍ଠ ରୋଗର ଚିକିତ୍ସା ଥିଲା ଚୌଲ ମୁଗ୍ରା ତେଲ, ଭ୍ରମରମାରୀ କାଠ, ଢେଡେକ ତଥା-କଥିତ ଗଛ ପତ୍ରର ରସ । କିନ୍ତୁ ଏତେ ବଡ଼ ସାଂଘାତିକ ରୋଗକୁ ସେମାନେ ଅୟତ୍ତ କରିବାକୁ ସକ୍ଷମ ନ ଥିଲେ। ସେମାନଙ୍କର ଉପସ୍ଥିତି ଯୁଅ ମୁହଁରେ ପତର ଭଳି। ୧୯୦୮

Digitized by srujanika@gmail.com

ମସିହାରେ ଡ଼. ଢ଼. ଏସ୍ କାହାଣଲ୍ ଜର୍ମାନୀରେ । ସେଉଠୁ ଆରମ୍ଭ ହେଲ୍ କୁଷ୍ଠରୋଗ ଚିକିତ୍ସାର ସ୍ୱର୍ଣ୍ଣଯୁଗ ।

## କୁଷ୍ଠ ରୋଗର ନୂତନ ଚିକିତ୍ସା

ଗତ ତ୍ରିଶବର୍ଷ ମଧ୍ୟରେ କୁଷ୍ଠରୋଗ ଚିକିତ୍ସାରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଛି । ନୂତନ ଚିକିତ୍ସା ପଦ୍ଧତିରେ କୁଷ୍ଠରୋଗ ସହଜରେ ଆୟତ୍ତ ହୋଇପାରୁଥିବାରୁ ରୋଗୀମାନଙ୍କୁ ପୂର୍ବଭଳି ଅଲଗା ରଖି ଚିକିତ୍ସା କରିବା ଆବଶ୍ୟକ ହେଉନାହିଁ । ଯକ୍ଷ୍ମା, ହଳଦିଆ କାମଳ, ଟାଇଫଏଡ୍ ପ୍ରଭୃତି ସଂକ୍ରାମକ ରୋଗ ଭଳି କୁଷ୍ଠରୋଗୀମାନେ ସାଧାରଣ ହସ୍ପିଟାଲ୍ ଓ ଡାକ୍ତରଖାନା ଗୁଡ଼ିକରେ ଅନ୍ୟାନ୍ୟ ରୋଗୀମାନଙ୍କ ସହିତ ଏକାଠି ମିଶିରହି ଚିକିତ୍ସିତ ହେଲେ ମଧ୍ୟ ସେମାନଙ୍କଠାରୁ ରୋଗ ଡେଇଁ ଅନ୍ୟାନ୍ୟ ସୁସ୍ଥ ଲୋକଙ୍କୁ ରୋଗ କରିବାର ସମ୍ଭାବନା କ୍ଷୀଣ ।

ପ୍ରଥମେ କୁଷ୍ଠରୋଗ ଚିକିତ୍ସାରେ କେବଳ ଗୋଟିଏ ଔଷଧ 'ଡାପସୋନ୍' ବଟିକା ଦିଆଯାଉଥିଲା ।

ବର୍ତ୍ତମାନ "ଜାତୀୟ କୁଷ୍ଠରୋଗ ଦୂରୀକରଣ ଯୋଜନା" କାର୍ଯ୍ୟକାରୀ କରାଗଲା ପରଠାରୁ ଏକାଧିକ ଔଷଧ ରୋଗୀମାନଙ୍କୁ ମାଗଣାରେ ଯୋଗାଇ ଦିଆଯାଉଛି । ଏଭଳି ସଘନ ଚିକିତ୍ସା ଫଳରେ ଚର୍ମରେ ଅଧିକ ଜୀବାଣୁ ଥିବା ସାଂଘାତିକ କୁଷ୍ଠରୋଗ ସହଜରେ ଆୟତ୍ତ ହୋଇପାରୁଛି ।

Digitized by srujanika@gmail.com

## ଏକାଧିକ ଔଷଧ ଦେଇ ସଘନ ଚିକିତ୍ସାର ଉଦ୍ଦେଶ୍ୟ

ଏକାଧିକ ଔଷଧ ଦେଇ ଚର୍ମରେ ଅଧିକ ଜୀବାଣୁ ଥିବା ସାଂକ୍ରାମିକ କୁଷ୍ଠରୋଗୀମାନଙ୍କୁ ସଘନ ଚିକିତ୍ସା କରିବାଦ୍ୱାରା ନିମ୍ନଲିଖିତ ଉଦ୍ଦେଶ୍ୟ ସାଧିତ ହୁଏ ।

୧ । ଅଳ୍ପ ସମୟ ମଧ୍ୟରେ ସଂକ୍ରାମକ କୁଷ୍ଠ ରୋଗ ସାଧାରଣ କୁଷ୍ଠରୋଗରେ ପରିଣତ ହୁଏ କାରଣ ରୋଗ ସଂକ୍ରମଣ ପାଇଁ ଆବଶ୍ୟକ ଅଧିକ ଜୀବାଣୁ ଏହି ଚିକିତ୍ସାରେ ଶୀଘ୍ର ମରିଯାଆନ୍ତି ।

୨ । କୁଷ୍ଠ ରୋଗର ଜୀବାଣୁମାନେ ଅଧିକ ଦିନଧରି କେବଳ "ଡାପସୋନ୍" ବଟିକା ଦ୍ୱାରା ଚିକିତ୍ସିତ ହେଲେ, ପରେ ଏହି ଔଷଧକୁ ଆଉ ମାନନ୍ତି ନାହିଁ । ଫଳରେ ରୋଗ ପୁଣି ବୃଦ୍ଧିପାଏ କିନ୍ତୁ ଏକାଧିକ ବଟିକା ଦ୍ୱାରା ଚିକିତ୍ସିତ ହେଲେ ସେ ଭଳି ହୁଏନାହିଁ । ଜୀବାଣୁମାନେ ବିଭିନ୍ନ ଔଷଧର କାର୍ଯ୍ୟପ୍ରଣାଳୀ ବୁଝିନପାରି ଔଷଧକୁ ଗୁଣହୀନ କରିପାରନ୍ତି ନାହିଁ । ଏଭଳି ପ୍ରକ୍ରିୟାକୁ ଡାକ୍ତରୀ ଭାଷାରେ "ଡ୍ରଗ ରେଜିଷ୍ଟାନ୍ସ" କହନ୍ତି । ଏକାଧିକ ଔଷଧ ଖାଇଲେ ଡ୍ରଗ୍ ରେଜିଷ୍ଟାନ୍ସ" ହୁଏନାହିଁ ଫଳରେ ଏଭଳି ଯେଉଁ ଜୀବାଣୁମାନେ ସୁସ୍ଥଲୋକ ଦେହରେ ରୋଗ ସଂକ୍ରମଣ କରନ୍ତି ତାହା ସହଜରେ ଆୟତ୍ତ କରାଯାଇପାରେ ।

୩ । କୁଷ୍ଠ ରୋଗପାଇଁ ଏକାଧିକ ଔଷଧ ଡାକ୍ତରଙ୍କ ପରାମର୍ଶ ଅନୁସାରେ ଖାଇଲେ ବର୍ଷବର୍ଷ ଧରି ରୋଗ ଚିକିତ୍ସା କରିବା ଆବଶ୍ୟକ ହୁଏ ନାହିଁ । ଏହା ଶୀଘ୍ର ଆୟତ୍ତ ହୋଇପାରେ ।

Digitized by srujanika@gmail.com

୪। କୁଷ୍ଠରୋଗର ସବୁଠୁ ଖରାପ ଗୁଣ ରୋଗୀକୁ ବିକଳାଙ୍ଗ କରିବା। କିନ୍ତୁ ଏଭଳି ସଘନର ଚିକିତ୍ସା କଲେ ରୋଗୀ ବିକଳାଙ୍ଗ ହୁଏ ନାହିଁ ଏବଂ ଘା' ଘଉଡ଼ ଶୀଘ୍ର ଶୁଖିଯାଏ। ଅବଶ୍ୟ ଯାହା ବିକଳାଙ୍ଗ ହୋଇସାରିଛି ତାହା ଫେରିଆସେ ନାହିଁ । ପରବର୍ତ୍ତୀ କାଳରେ ବିକଳାଙ୍ଗ ଅଙ୍ଗରେ ଅସ୍ତ୍ରୋପଚାର କରି (ପ୍ଲାଷ୍ଟିକ୍ ସର୍ଜେରୀ) ତାହାର ସୌନ୍ଦର୍ଯ୍ୟ ଫେରାଇ ଅଣାଯାଏ । ଏଭଳି ଅସ୍ତ୍ରୋପଚାର କରିବାର ବ୍ୟବସ୍ଥା ଓଡ଼ିଶାର ସବୁ ମେଡ଼ିକାଲ୍ କଲେଜରେ ଅଛି ଏବଂ କେତେକ "ପ୍ଲାଷ୍ଟିକ୍ ସର୍ଜନ" ଘରୋଇ ଭାବରେ ମଧ୍ୟ ଏଭଳି ଚିକିତ୍ସା କରୁଛନ୍ତି । କିନ୍ତୁ ଏଭଳି ବିକଳାଙ୍ଗ ଅଙ୍ଗରେ ଅସ୍ତ୍ରୋପଚାର କରିବା ପୂର୍ବରୁ ରୋଗୀ ଜୀବାଣୁ ମୁକ୍ତ ହେବା ଆବଶ୍ୟକ।

ଏକାଧିକ ଔଷଧର ଡାକ୍ତରୀ ନାମ ଓ ଚିକିତ୍ସା ପ୍ରଣାଳୀ—

---

ଔଷଧ ଗୁଡ଼ିକ ହେଲେ—

୧। ରିଫାମ୍ ପିସିନ୍

୨। କ୍ଲୋଫା ଜାମିନ୍

୩। ଡ଼ାପସୋନ୍

ଚର୍ମରେ ଅଧିକ ଜୀବାଣୁ ଥିଲେ (ମଲ୍ଟି ବାସିଲାରି ଲେପ୍ରସି) ପ୍ରଥମେ ଏକଦିନ ଖାଇବାକୁ ଦିଆଯାଏ । ରିଫାମ୍ ପିସିନ୍ ବଟିକା ସକାଳେ ଖାଲିପେଟରେ ଛଅଶହ ମିଲିଗ୍ରାମ୍ 'କ୍ଲୋଫାଜାମିନ୍' ଶହେ ମିଲିଗ୍ରାମ୍ ଏବଂ 'ଡାପସୋନ୍" ଶହେ ମିଲିଗ୍ରାମ୍ ଦିଆଯାଏ।

Digitized by srujanika@gmail.com

ଦୁଇ ସପ୍ତାହ ଏଭଳି ଖାଇବା ପରେ ମାସକୁ ଥରେ ଡାକ୍ତର କିମ୍ବା ସ୍ୱାସ୍ଥ୍ୟ କର୍ମୀଙ୍କର ଉପସ୍ଥିତିରେ ୧ଫାମ୍ ପିସିନ୍ ଛଅଶହ ମିଲିଗ୍ରାମ୍ ଡାପସୋନ୍ ଏକଶହ ମିଲିଗ୍ରାମ୍ ଦୁଇବର୍ଷ ପର୍ଯ୍ୟନ୍ତ ଦିଆଯାଏ । ଡାକ୍ତର କିମ୍ବା ସ୍ୱାସ୍ଥ୍ୟ କର୍ମୀଙ୍କର ଉପସ୍ଥିତିରେ ଔଷଧ ଖାଇଲେ, ରୋଗୀ ନିଶ୍ଚିତ ଭାବରେ ଔଷଧ ଖାଉଛନ୍ତିବୋଲି ଧରିନିଆଯାଏ, ଫଳରେ ରୋଗୀ ଅଧିକ ଉପକୃତ ହୁଏ । ମାସରେ ଥରେ ଔଷଧ ଖାଉଥିବାରୁ ରୋଗୀଙ୍କୁ ସବୁଦିନେ ମନେପକାଇ ଔଷଧ ଖାଇବା ଦରକାର ପଡ଼େନାହିଁ । କେବଳ ଡାକ୍ତରଖାନାକୁ ଆସି ସ୍ୱାସ୍ଥ୍ୟକର୍ମୀଙ୍କ ଉପସ୍ଥିତିରେ ଔଷଧ ଖାଏ ।

ଯଦି କୌଣସି କାରଣରୁ ରୋଗୀ ଡାକ୍ତରଖାନାକୁ ନ ଆସିବାକୁ ପସନ୍ଦ କରନ୍ତି ତେବେ ପ୍ରଥମ ଦୁଇସପ୍ତାହ ସଘନ ଚିକିତ୍ସାପରେ 'କ୍ଲୋଫାଜାମିନ୍' ଦୈନିକ ପଚାଶ ମିଲିଗ୍ରାମ୍ ଓ 'ଡ଼ାପସୋନ୍' ଶହେ ମିଲିଗ୍ରାମ୍ ଦୁଇବର୍ଷ ପର୍ଯ୍ୟନ୍ତ ଖାଇବା ଉଚିତ ।

ଏହି ଔଷଧ ଖାଉଥିବାବେଳେ ମଝିରେ ମଝିରେ ରକ୍ତ ପରୀକ୍ଷା ଇତ୍ୟାଦି ପରୀକ୍ଷା କରିବା ଆବଶ୍ୟକ ହୋଇ-ଥାଏ । ତାହା ଚିକିତ୍ସା କରୁଥିବା ଡାକ୍ତରଙ୍କୁ ପଚାରି କରିବା ଉଚିତ ।

ଏହି ଯେଉଁ ଚିକିତ୍ସା ଉପରେ ଦିଆଗଲା ତାହା ବୟସ୍କ ଲୋକଙ୍କପାଇଁ । ପିଲା ଓ କମ୍ ବୟସର

Digitized by srujanika@gmail.com

ଲୋକମାନଙ୍କ ପାଇଁ ଓଜନ ଅନୁସାରେ କେତେକ ଔଷଧର ପରିମାଣ କମାଇ ଦିଆଯାଏ ।

ଯେଉଁ କୁଷ୍ଠରୋଗର ଚର୍ମରେ ଅଳ୍ପ ଜୀବାଣୁ ଥା'ନ୍ତି କିମ୍ବା କୌଣସି ଜୀବାଣୁ ମିଳନ୍ତି ନାହିଁ, ତାକୁ 'ପସିବାସିଲାରୀ ଲେପ୍ରସି କୁହାଯାଏ । ଏଭଳି ରୋଗ ଭୋଗ କରୁଥିବା ବୟସ୍କ ଲୋକମାନେ ମାସକୁ ଥରେ ରିଫାମ୍ପିସିନ୍ ଛଅଶହ ମିଲି-ଗ୍ରାମ୍ ଏବଂ ଡାପସୋନ୍ ଶହେ ମିଲିଗ୍ରାମ୍ ଛଅମାସ ପର୍ଯ୍ୟନ୍ତ ଖାଇବା ଉଚିତ । ଛଅ ମାସରେ ରୋଗ ଠିକ୍ ନ ହେଲେ ନଅମାସ ପର୍ଯ୍ୟନ୍ତ ଔଷଧ ଦିଆଯାଏ ।

ଯେଉଁମାନେ ସ୍ୱାସ୍ଥ୍ୟକର୍ମୀଙ୍କର ତତ୍ତ୍ୱାବଧାନରେ ଔଷଧ ଖାଇନାହାନ୍ତି, ସେମାନେ 'ଡାପସୋନ୍' ବଟିକା ଦିନକୁ ଶହେ ମିଲିଗ୍ରାମ୍ ଛଅମାସ ପର୍ଯ୍ୟନ୍ତ ଖାଇପାରନ୍ତି । ଏହି ଚିକିତ୍ସା ପ୍ରଣାଳୀ ଭାରତ ସରକାରଙ୍କ 'କୁଷ୍ଠରୋଗ ଦୂରୀକରଣ' ଯୋଜନା ଦ୍ୱାରା ସ୍ଥିର କରାଯାଇଛି । କିନ୍ତୁ ରୋଗୀଙ୍କର ଅବସ୍ଥା ଦେଖି ବିଶେଷଜ୍ଞ ଡାକ୍ତରମାନେ ଚିକିତ୍ସା ପ୍ରଣାଳୀ ବଦଳାଇ ଥାଆନ୍ତି । ଏସବୁ ଔଷଧ ମାଗଣାରେ ମିଳୁଛି । ମନରୁ ଦ୍ୱନ୍ଦ୍ୱ ଓ ଭୟ କାଟାଇ ମାଗଣା ଔଷଧ ଖାଇବା ଉଚିତ । ଶୀଘ୍ର ଭଲ ହେବାକୁ ବୃଥା ଅର୍ଥଶ୍ରାଦ୍ଧ କରିବା ଉଚିତ ନୁହେଁ ।

ଏ କଥା ଶୁଣି ସୁରଭି ମନର ଭୟ ଦୂର ହୋଇଗଲା ।

———

Digitized by srujanika@gmail.com